# ମଛିନ୍ଦ୍ରଙ୍କ ବ୍ରହ୍ମଗୀତା




ରଘୁନାଥ ରାଉ

# ଶ୍ରୀମଦ୍ଭିନ୍ନୁସ୍ୟ ବ୍ରହ୍ମଗୀତା

ବ୍ରହ୍ମଅବଧୂତ

**ବିଶ୍ୱନାଥ ବାବା**

ବିରଚିତ,

ରେଭେନ୍‌ସା କଲେଜର ପ୍ରିନ୍‌ସିପାଲ୍

**ଶ୍ରୀ ପ୍ରାଣକୃଷ୍ଣ ପରିଜା ଏମ୍. ଏ, ଆଇ. ଇ. ଏସ୍ ଙ୍କ**

**ଗ୍ରନ୍ଥ ପରିଚୟ ସହିତ ।**

---

ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏମ୍. ଏ ଓ ଶ୍ରୀ ବଛନ୍ଦଚରଣ ପଟ୍ଟନାୟକ ବି.ଏ

ଯୁଗ୍ମସମ୍ପାଦକ


ସତ୍ୟମହିମାଧର୍ମାଲୋଚନା ସମିତିଙ୍କ ଦ୍ୱାରା

ପ୍ରକାଶିତ

୧୯୩୯

---

ମୂଲ୍ୟ ଟ ୦ ୳୶ (ଦଶଅଣା ମାତ୍ର)

# ଶୁଦ୍ଧିପତ୍ର

ସାବଧାନତା ସତ୍ତ୍ୱେ ଏ ଗ୍ରନ୍ଥରେ ଗୁଡ଼ିଏ ମୁଦ୍ରାକର ପ୍ରମାଦ ରହିଯାଇଅଛି ଓ ଏଥିଯୋଗୁଁ ସ୍ଥଳବିଶେଷରେ ଅର୍ଥବୈକଲ୍ୟ ଘଟି ଅଛି । ଅତଏବ ପାଠକପାଠିକାମାନେ ଦୟା କରି ଏହି ଶୁଦ୍ଧିପତ୍ର ଅନୁସାରେ ଏ ଗ୍ରନ୍ଥକୁ ପ୍ରଥମେ ସଂଶୋଧିତ କରି ସାରି ପରେ ପାଠ କରିବେ ।

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୧୩ | ୧୦ | ହୁଅନ୍ତୁ | କସ୍ଥ |
| ୧୭ | ୩ | ବ୍ରହ୍ମ | ବ୍ରହ୍ମ |
| ୨୧ | ୧୯ | କରୁ | କର |
| ୩୮ | ୩ | ଅଠେ | ଅଛନ୍ତି |
| ୫୫ | ୯ | ବାହୁଃ | ବହୁଃ |
| ୭୭ | ୧୯ | ଉପାସ କରିବା | ଉପାସକଗଣ |
| ୧୦୧ | ୫ | ବିକାର ଯେ ବିବର୍ତ୍ତିନ ହୁନ୍ତି | ବିକାର ବିବର୍ତ୍ତି ଯେ ନ ହୁଅନ୍ତି |
| | ୧୦ | ମୋହାମୋହ | ମହାମୋହ |
| [illegible] | ୧୮ | ବଛଜ୍ୱାଳା | ବିଷଜ୍ୱାଳା |
| ୧୧୮ | ୭ | ପଦ | ପଦେ |
| ୧୨୧ | ୮ | ଜ୍ଞାନୈଶ୍ୱର୍ଯ୍ୟ | ଜ୍ଞାନୈଶ୍ୱର୍ଯ୍ୟ |

# ଗ୍ରନ୍ଥ ସୂଚନା

ପଦ୍ୟ ରଚନାଦ୍ୱାରା ସ୍ୱକୀୟ ବିଦ୍ୟାଶକ୍ତି ପ୍ରକଟନ ନିମନ୍ତେ ବା ମନୋକଳ୍ପିତ କଳ୍ପନା ଜଳ୍ପନାଦି ପ୍ରକାଶ କରିବା ନିମନ୍ତେ ଏହି ଶ୍ରୀମଚ୍ଚିନ୍ମୟ ବ୍ରହ୍ମଗୀତା ବିରଚିତ ହୋଇ ନାହିଁ । ସର୍ବଜନ ମଙ୍ଗଳାର୍ଥେ ସରଳହୃଦୟ ଜିଜ୍ଞାସୁମାନଙ୍କ ଚିତ୍ତାକର୍ଷକ ହେବା ନିମିତ୍ତ ଶ୍ରୀଗୁରୁ-ବାକ୍ୟ ସୁଶାସ୍ତ୍ରାନୁମୋଦିତ ଯୁକ୍ତି ଅନୁସାରେ ଏହି କ୍ଷୁଦ୍ର ଚିନ୍ମୟ ବ୍ରହ୍ମଗୀତା ବିରଚିତ ହୋଇଅଛି । ସତ୍ୟଧର୍ମାନୁରାଗୀ ସଜ୍ଜନବୃନ୍ଦ ଏହି ଗୀତା ଅଧ୍ୟୟନଦ୍ୱାରା ଅଲେଖ ପରମବ୍ରହ୍ମଙ୍କୁ ଉପଲବ୍ଧି କରି ପାରିବେ ବୋଲି ଆଶା କରି ଏ ଗ୍ରନ୍ଥ ରଚନା କରିଅଛୁଁ । ମହିମାଧର୍ମ ପ୍ରତିପାଦକ, ସତ୍ୟ ମହିମାଧର୍ମର ଇତିହାସ ଓ ଭାଗବତ-ସାର ସତ୍ୟଧର୍ମ ଗ୍ରନ୍ଥାଦି ପ୍ରଣୟନ ପରେ ସତ୍ୟମହିମାଧର୍ମର ଅନୁସୃତ ତତ୍ତ୍ୱମାନ ଧର୍ମାନୁରାଗୀ, ସତ୍ୟମାର୍ଗାନ୍ୱେଷୀ ସଜ୍ଜନମାନଙ୍କ ପକ୍ଷରେ ସୁବୋଧ୍ୟ ହେବ, ଏହି ଉଦ୍ଦେଶ୍ୟରେ ଓ ମହାମହିମା ଗୋସାଇଁଙ୍କ ଅପାର ଅନୁଗ୍ରହରେ ଏ ଗୀତା ବିରଚିତ ହେଲା । ଏହି ରଚନାକୁ ସିଦ୍ଧ ସାଧୁ ଅବଧୂତ ଗୋପାଳଚରଣ ବାବା, ଦୀନବନ୍ଧୁ ବାବା, ଅନିରୁଦ୍ଧ ବାବା, ରାମାନନ୍ଦ ବାବା ଓ ଅନନ୍ତ ଚରଣ ବାବା ପ୍ରଭୃତି ପାଠ କରି "ଏହା ଶୀଘ୍ର ମୁଦ୍ରିତ ହେଲେ ସତ୍ୟଧର୍ମ ପ୍ରଚାରର ବିଷୟରେ ବିଶେଷ ଉନ୍ନତି ସାଧିତ ହେବ ବୋଲି" ମତପ୍ରକାଶ କଲେ । ତତ୍ପରେ ସତ୍ୟ ମହିମାଧର୍ମାଲୋଚନା ସମିତିର ସଭ୍ୟବୃନ୍ଦ ଏ ଗୀତାକୁ ଶୀଘ୍ର ପ୍ରକାଶ କରିବାପାଇଁ ଆଗ୍ରହାନ୍ୱିତ ହେଲେ ।

ଏ ଗ୍ରନ୍ଥର "ଗ୍ରନ୍ଥ-ପରିଚୟ" ଲେଖିବା ନିମିତ୍ତ ଅମ୍ଭେ ରେଭେନ୍‌ସା କଲେଜର ପ୍ରିନ୍‌ସିପାଲ୍ ସାହେବ ପରମ କଲ୍ୟାଣୀୟ ଶ୍ରୀମାନ୍ ଶ୍ରୀ ପ୍ରାଣକୃଷ୍ଣ ପରିଜା, ଏମ୍. ଏ, ଆଇ. ଇ. ଏସ୍‌ଙ୍କ କରରେ ଏ ଗ୍ରନ୍ଥର ପାଣ୍ଡୁଲିପି ଅର୍ପଣ କରିଥିଲୁଁ । ସେ ମହାଶୟ ବହୁ ଆୟାସ ସ୍ୱୀକାର କରି ଏହାର ସୁଚିନ୍ତିତ ମୁଖବନ୍ଧ (ଗ୍ରନ୍ଥପରିଚୟ) ଲେଖି ଅମ୍ଭର ଅଶେଷ କଲ୍ୟାଣଭାଜନ ହୋଇଅଛନ୍ତି । ଏ ଗ୍ରନ୍ଥର ପାଣ୍ଡୁଲିପି ଓ ପ୍ରୁଫ୍ ସଂଶୋଧନ କର୍ମ ଓଡ଼ିଆ ଭାଷାକୋଷ ପ୍ରଣେତା ସାହିତ୍ୟବିଶାରଦ ଶ୍ରୀମାନ୍ ରାୟ ବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜ କରିଥିବା ହେତୁ ଅମ୍ଭେ ତାଙ୍କର ଐହିକ ଓ ପାରତ୍ରିକ ମଙ୍ଗଳ କାମନା କରୁଅଛୁଁ ।

ପରମ କଲ୍ୟାଣୀୟ ଭକ୍ତ ଓ ସିଦ୍ଧ-ସାଧୁ-ସେବକ ଗଞ୍ଜାମ-ନିବାସୀ ଶ୍ରୀମାନ୍ ଉଦୟନାଥ ଜେନା ଓ ପରମ କଲ୍ୟାଣୀୟ ଶ୍ରୀମାନ୍ ଗଣପତି ପଟ୍ଟନାୟକ ଏ ଗ୍ରନ୍ଥର ମୁଦ୍ରଣବ୍ୟୟ ବହନ କରିଥିବାରୁ ସେ ଦୁହିଁଙ୍କ ମଙ୍ଗଳ ନିମନ୍ତେ ଅମ୍ଭେ ପ୍ରଭୁଙ୍କଠାରେ ପ୍ରାର୍ଥନା କରୁଅଛୁଁ ।

ଉପସଂହାରରେ ବକ୍ତବ୍ୟ ଏହି ଯେ, ସନାତନସତ୍ୟଭକ୍ତ, ତତ୍ତ୍ୱଜିଜ୍ଞାସୁ ଓ ଚିନ୍ମୟ ବ୍ରହ୍ମୋପାସକ ଭକ୍ତଗଣଙ୍କ କରରେ ଅମ୍ଭେ ଏ ଗ୍ରନ୍ଥ ଅତି ଆଦରରେ ଅର୍ପଣ କରୁଅଛୁଁ । ବ୍ରହ୍ମବାଦୀ ସିଦ୍ଧ ସାଧୁ ସଜ୍ଜନବୃନ୍ଦ ଏହା ଅଧ୍ୟୟନ କରି ବ୍ରହ୍ମବାଦ ପ୍ରଚାରରେ ବିଶେଷ ଯତ୍ନବାନ୍ ହେଲେ ଗୀତାର ଉଦ୍ଦେଶ୍ୟ ସଫଳ ହେଲା ବୋଲି ଜ୍ଞାନ କରିବୁଁ । ଇତି ।

କାର୍ତ୍ତିକ ଶୁକ୍ଳଚତୁର୍ଦ୍ଦଶୀ<br>୧୩୦୨ ସାଲ<br>ମହିମାବ୍ଦ

ସର୍ବଜନ ମଙ୍ଗଳାକାଂକ୍ଷୀ ଚିନ୍ମୟବ୍ରହ୍ମବାଦୀ<br>**ବିଶ୍ୱନାଥ ବାବା**

# ଗ୍ରନ୍ଥ ପରିଚୟ

ବ୍ରହ୍ମଅବଧୂତ ସନ୍ନ୍ୟାସୀ ଶ୍ରୀ ବିଶ୍ୱନାଥ ବାବା ମହୋଦୟଙ୍କ ପ୍ରଣୀତ "ଶ୍ରୀମଚ୍ଚିନ୍ମୟ ବ୍ରହ୍ମଗୀତା"ର ପାଣ୍ଡୁଲିପି ପାଠ କରିବାର ସୁଯୋଗ ମୁଁ ଲାଭ କରିଅଛି । ସତ୍ୟ-ମହିମା-ଧର୍ମାବଲମ୍ବୀଗଣଙ୍କ ଗୋଷ୍ଠୀରେ ବାବା ମହୋଦୟଙ୍କ ପ୍ରତିଷ୍ଠା ଖୁବ୍ ବେଶୀ । ଉତ୍କଳ-ଭୂମିମାନଙ୍କ ସମକ୍ଷରେ ସତ୍ୟମହିମାଧର୍ମର ତଥ୍ୟମାନ ଉପସ୍ଥାପିତ କରିବା ନିମନ୍ତେ ସେ ମହୋଦୟ ଯଥେଷ୍ଟ କାର୍ଯ୍ୟ କରିଅଛନ୍ତି । ତାଙ୍କ ପ୍ରଣୀତ "ମହିମାଧର୍ମ ପ୍ରତିପାଦକ" ଉକ୍ତ ଧର୍ମ ସମ୍ପର୍କରେ ସର୍ବ ପ୍ରଥମ ବୃହତ୍ତମ ପ୍ରାମାଣିକ ଗ୍ରନ୍ଥ ଏବଂ ସେ ଗ୍ରନ୍ଥ ଛଡ଼ା "ସତ୍ୟମହିମାଧର୍ମର ଇତିହାସ" ଓ "ଭାଗବତସାର ସତ୍ୟ-ଧର୍ମ" ପ୍ରଭୃତି ଆଜି ଯେଉଁ କେତେଖଣ୍ଡି ଗ୍ରନ୍ଥ ସେ ମହୋଦୟ ପ୍ରଣୟନ କରିଅଛନ୍ତି, ତଦ୍ଦ୍ୱାରା ସତ୍ୟମହିମାଧର୍ମର ପ୍ରକୃତ ରୂପ ଜାଣିବା ସାଧାରଣଙ୍କ ପକ୍ଷରେ ସୁକର ହୋଇଅଛି ।

ସତ୍ୟମହିମାଧର୍ମର ପ୍ରତିଷ୍ଠାତା ଓ ପ୍ରବର୍ତ୍ତକ "ମହିମା ଗୋସାଇଁ" ନାମରେ ପ୍ରସିଦ୍ଧ ଓ ସତ୍ୟମହିମାଧର୍ମାବଲମ୍ବୀମାନେ ତାଙ୍କୁ ପରମେଶ୍ୱରଙ୍କ ଅବତାର ବୋଲି ଜ୍ଞାନ କରିଥାଆନ୍ତି । ମହିମା ଗୋସାଇଁଙ୍କ ସାକ୍ଷାତ୍ ସମ୍ପର୍କରେ ଆସିବା ଦ୍ୱାରା ଓଡ଼ିଶାର ଅନ୍ୟତମ ଭକ୍ତକବି ଅନ୍ଧ ଓ ନିରକ୍ଷର ଭୀମ ଭୋଇଙ୍କ କବିତାର ସ୍ଫୁରଣ ଘଟିଥିବା ସମସ୍ତଙ୍କୁ ଜଣା ।

ସତ୍ୟମହିମାଧର୍ମାବଲମ୍ବୀମାନେ ଶୁଦ୍ଧ ସନାତନ ବୈଦାନ୍ତିକ ହିନ୍ଦୁଧର୍ମର ଉପାସକ ବୋଲି ଘୋଷଣା କରୁଥିଲେ ହେଁ ସେମାନଙ୍କର କେତେକ ଧର୍ମଗତ ସଙ୍ଗେ ବୌଦ୍ଧଧର୍ମଗତର

ସାମଞ୍ଜସ୍ୟ ଲକ୍ଷ୍ୟକରି ସେମାନଙ୍କ ଧର୍ମ ବୌଦ୍ଧଧର୍ମ ସଙ୍ଗେ ସଂପୃକ୍ତ ବୋଲି କେହି କେହି ମତ ପ୍ରକାଶ କରିଥାଆନ୍ତି । କିନ୍ତୁ ଏ ମତ ଭ୍ରାନ୍ତ ବୋଲି ଶ୍ରୀ ବିଶ୍ୱନାଥ ବାବା ମହୋଦୟ ଘୋଷଣା କରୁ-ଅଛନ୍ତି । ସତ୍ୟ ମହିମାଧର୍ମୀବଲମ୍ବୀମାନେ ପୌରୋହିତ୍ୟ ପ୍ରଥାରେ ବିଶ୍ୱାସ କରନ୍ତି ନାହିଁ ଏବଂ ସମାଜରେ ବ୍ରାହ୍ମଣାଧିପତ୍ୟର ସେମାନେ ଘୋର ବିରୋଧୀ । ଏପରି କି, ବ୍ରାହ୍ମଣଙ୍କ ରାନ୍ଧିଥିବା ବା ବ୍ରାହ୍ମଣଙ୍କ ଛୁଇଁଥିବା ଖାଦ୍ୟଦ୍ରବ୍ୟ ଭୋଜନ କରିବା ସେମାନଙ୍କ ପକ୍ଷରେ ନିଷିଦ୍ଧ । ସତ୍ୟମହିମାଧର୍ମୀବଲମ୍ବୀମାନେ ନିରାକାର ବ୍ରହ୍ମୋପାସକ ଓ ମୂର୍ତ୍ତିପୂଜାର ବିରୋଧୀ । ସେମାନଙ୍କ ଉପାସିତ ବ୍ରହ୍ମ ଏକ ଏବଂ ଅଦ୍ୱିତୀୟ ।

ଶ୍ରୀ ବିଶ୍ୱନାଥ ବାବା ମହୋଦୟ ସତ୍ୟମହିମାଧର୍ମର ତଥ୍ୟ ବ୍ୟାଖ୍ୟାନ କରିବା ନିମନ୍ତେ ଏପର୍ଯ୍ୟନ୍ତ ଯେତେ ଖଣ୍ଡ ଗ୍ରନ୍ଥ ଲେଖିଅଛନ୍ତି, ତନ୍ମଧ୍ୟରେ ଏହି "ଶ୍ରୀମଚ୍ଛିନ୍ମୟ ବ୍ରହ୍ମଗୀତା" ଶେଷ ଗ୍ରନ୍ଥ । ଏ ଗ୍ରନ୍ଥରେ ମୋଟରେ ବାର ଗୋଟି ଅଧ୍ୟାୟ ଅଛି ଓ ଅଧ୍ୟାୟ ମାନଙ୍କରେ ନିମ୍ନଲିଖିତରୂପେ ବିଷୟବିଭାଗ କରି ଯାଇଅଛି । ଯଥାଃ—

ପ୍ରଥମ ଅଧ୍ୟାୟ—ଗ୍ରନ୍ଥୋପକ୍ରମ, ବ୍ରହ୍ମ ସ୍ତୁତି ଓ ବର୍ଣ୍ଣନ ।

ଦ୍ୱିତୀୟ ଅଧ୍ୟାୟ—ଭକ୍ତମାହାତ୍ମ୍ୟ ବର୍ଣ୍ଣନ ।

ତୃତୀୟ ଅଧ୍ୟାୟ—ନିଷ୍କାମ କର୍ମତତ୍ତ୍ୱ ବର୍ଣ୍ଣନ ।

ଚତୁର୍ଥ ଅଧ୍ୟାୟ—ବିଶୁଦ୍ଧ ଜ୍ଞାନଯୋଗ—କେବଳ ବ୍ରହ୍ମହିଁ ସତ୍ୟ, ଏହି ବୈଦାନ୍ତିକ ତଥ୍ୟର ଉପଲବ୍ଧିହିଁ ବିଶୁଦ୍ଧ ଜ୍ଞାନ ।

ପଞ୍ଚମ ଅଧ୍ୟାୟ—ଶାଶ୍ୱତଶାନ୍ତିର ଉପାୟ କଥନ ; ସାଂସାରିକ ମାୟାବନ୍ଧନରୁ ମୁକ୍ତ ହେଲେ ଶାଶ୍ୱତଶାନ୍ତିର ସମ୍ଭାବନା ।

ଷଷ୍ଠ ଅଧ୍ୟାୟ—ବ୍ରହ୍ମପ୍ରାପ୍ତିର ଉପାୟ କଥନ ଓ ବ୍ରହ୍ମ-ପ୍ରାପ୍ତି ପଥରେ ମୂର୍ତ୍ତିପୂଜା ଓ ଭଗବାନଙ୍କଠାରେ ମାନବୋଚିତ ଗୁଣାରୋପ କପର ପ୍ରତିବନ୍ଧକ, ତହିଁର ବର୍ଣ୍ଣନ ।

ସପ୍ତମ ଅଧ୍ୟାୟ—ମୁକ୍ତିଲାଭ ନିମନ୍ତେ ଗୃହସ୍ଥମାନଙ୍କ କର୍ତ୍ତବ୍ୟ ବର୍ଣ୍ଣନ ।

ଅଷ୍ଟମ ଅଧ୍ୟାୟ—ମାନବଜୀବନ ଓ ସୃଷ୍ଟିପ୍ରକ୍ରିୟା ଓ ଜନ୍ମ-ନିବର୍ତ୍ତନ ।

ନବମ ଅଧ୍ୟାୟ—ବ୍ରହ୍ମଙ୍କର ସର୍ବବ୍ୟାପିତ୍ୱ ଓ ପଞ୍ଚଭୂତମୟ ଶରୀରମାନଙ୍କରେ ଭବବତ୍‌ସତ୍ତାର ଅବସ୍ଥିତି ବର୍ଣ୍ଣନ । ଅଦ୍ୱିତୀୟ ବ୍ରହ୍ମଙ୍କ ସତ୍ତା ସଙ୍ଗେ ପଞ୍ଚ ମହାଭୂତର ସମ୍ପର୍କ ବର୍ଣ୍ଣନ । ବ୍ରହ୍ମହିଁ ଅବିନାଶୀ ଓ ଅନ୍ୟ ସମସ୍ତ ବିନାଶଶୀଳ ।

ଦଶମ ଅଧ୍ୟାୟ—ବୈରାଗ୍ୟଦ୍ୱାରା ଅସାର ମୁକ୍ତିଲାଭ ବର୍ଣ୍ଣନ । (ଯେଉଁମାନେ ସାଧୁସଙ୍ଗ ତ୍ୟାଗ କରି ସାଂସାରିକ ଭୋଗ ବିଳାସରେ ମଗ୍ନ ରହନ୍ତି, ସେମାନେ ଦୁଃଖ କଷ୍ଟ ଭୋଗ କରି କପରି ମୁକ୍ତିରୁ ବଞ୍ଚିତ ହୁଅନ୍ତି, ମୁଖ୍ୟତଃ ଏ ଅଧ୍ୟାୟରେ ଏହାହିଁ ପ୍ରତିପାଦିତ ହୋଇଅଛି ।)

ଏକାଦଶ ଅଧ୍ୟାୟ—ସତ୍ୟମହିମାଧର୍ମାବଲମ୍ବୀ ସାଧୁମାନଙ୍କ କର୍ତ୍ତବ୍ୟାକର୍ତ୍ତବ୍ୟ ନିରୂପଣ ।

ଦ୍ୱାଦଶ ଅଧ୍ୟାୟ—ମହିମା ଗୋସାଇଁଙ୍କ ଅବିର୍ଭାବ ଓ ଉତ୍କଳରେ ତାଙ୍କ ଦ୍ୱାରା ଏକ ଓ ଅଦ୍ୱିତୀୟ ବ୍ରହ୍ମଙ୍କ ଉପାସନା-ମୂଳକ ସତ୍ୟମହିମାଧର୍ମର ପ୍ରଚାର ଓ ପ୍ରସାର ବର୍ଣ୍ଣନ ।

"ମହିମାଧର୍ମ ପ୍ରତିପାଦକ" ଗ୍ରନ୍ଥରେ ଗ୍ରନ୍ଥକାରଙ୍କର ଯେଉଁ ବହୁଶାସ୍ତ୍ରଦର୍ଶିତା ଲକ୍ଷ୍ୟ କରାଯାଇଥାଏ, ଏହି "ଶ୍ରୀମଚ୍ଛିଜ୍ଞାସୁ

ବ୍ରହ୍ମଗୀତା" ରେ ମଧ୍ୟ ତାହାର ସ୍ପଷ୍ଟ ପରିଚୟ ମିଳେ । ଏଥିରେ ସତ୍ୟମହୁ ମାଧର୍ମର ଉଥ୍ୟମାନ ଧର୍ମପିପାସୁମାନଙ୍କ ସମକ୍ଷରେ ଉପସ୍ଥାପିତ କରିବାକୁ ବାବା ମହୋଦୟ ଯଥାସାଧ୍ୟ ଅଯ୍ୟାସ ସ୍ୱୀକାର କରିଅଛନ୍ତି । ଅବଶ୍ୟ କେତେକ ସ୍ଥଳରେ ( ଯଥା — ନବମ ଅଧ୍ୟାୟରେ କର୍ମଫଳ ବର୍ଣ୍ଣନବେଳେ ) ତାଙ୍କ ରଚନା ଟିକିଏ ଦୁର୍ବୋଧ ହୋଇଅଛି ଏବଂ ଜଗତରେ ଏକ ଓ ଅଦ୍ୱିତୀୟ ବ୍ରହ୍ମଙ୍କ ପ୍ରାଧାନ୍ୟ ସର୍ବଦା ବାବା ମହୋଦୟଙ୍କ ପ୍ରତିପାଦ୍ୟ ବିଷୟ ହୋଇଥିଲେହେଁ ଏ ଅଧ୍ୟାୟରେ ବ୍ରହ୍ମଙ୍କ ସହ ପଞ୍ଚମହାଭୂତଙ୍କୁ ମଧ୍ୟ ପ୍ରାଧାନ୍ୟ ଦିଆହୋଇଅଛି ବୋଲି ସାଧାରଣ ପାଠକଙ୍କ ମନରେ ଧାରଣା ଜନ୍ମି ପାରେ—ଏହା ମୁଁ ଆଶଙ୍କା କରୁଅଛି ।

ମୋର ବକ୍ତବ୍ୟ ଏହି କି, ହିନ୍ଦୁମାନଙ୍କ ବେଦାନ୍ତ ଦର୍ଶନରେ ନିର୍ବିକାର, ନିରୁପାଧିକ, ଅକ୍ଷୟ, ଅବ୍ୟୟ, ଅଜର, ଅମର ବ୍ରହ୍ମ ବା ପରମାତ୍ମାଙ୍କ ବିଷୟ ପ୍ରତିପାଦିତ ହୋଇଅଛି । ଏ ତତ୍ତ୍ୱର ପ୍ରତିପାଦକ ଗ୍ରନ୍ଥକୁ ବେଦାନ୍ତ ବୋଲାଯାଏ କାହିଁକି ? ଏହା ବେଦର ଅନ୍ତ ଅଟେ; ଏହା ବେଦର ଅନ୍ତିମଭାଗ । ବେଦର ଚାରିଗୋଟି ଅଙ୍ଗ ଅଛି । ଯଥା :—୧ ସଂହିତା ବା ବେଦର ମନ୍ତ୍ରଭାଗ, ୨ ବ୍ରାହ୍ମଣ ବା ଯଜ୍ଞର ବ୍ୟାଖ୍ୟା, ୩ ଆରଣ୍ୟକ ବା ଯଜ୍ଞ ସମ୍ବନ୍ଧରେ ରୂପ କଳ୍ପନା ଓ ୪ ଉପନିଷଦ୍ ବା ବ୍ରହ୍ମଜ୍ଞାନର ଉପଦେଶ । ପୂର୍ବକାଳରେ ଆର୍ଯ୍ୟମାନଙ୍କ ପାଇଁ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ଚାରିଗୋଟି ଆଶ୍ରମନିର୍ଦ୍ଦିଷ୍ଟ ହୋଇଥିଲା । ଏହି ଚାରି ଆଶ୍ରମରେ ବେଦର ଏହି ଚାରିଗୋଟି ଅଂଶ ଯଥାକ୍ରମେ ଅଧୀତ ଓ ଅନୁଷ୍ଠିତ ହେଉଥିଲା । ଆର୍ଯ୍ୟମାନେ ଯେତେବେଳେ ବାନପ୍ରସ୍ଥ ଆଶ୍ରମ ପରେ ଚରମ ଆଶ୍ରମ ଅବଲମ୍ବନ କରୁଥିଲେ,

ସେତେବେଳେ ସେମାନେ ଋଷିନାମରେ ଅଭିହିତ ହେଉଥିଲେ ଓ ତାଙ୍କ ପଠନୀୟ ଶାସ୍ତ୍ର ଥିଲା ଉପନିଷଦ୍ ବା ବେଦାନ୍ତ । ଏଥିର ଅନ୍ୟ ନାମ ବ୍ରହ୍ମବିଦ୍ୟା । ଏହି ବିଦ୍ୟାଦ୍ୱାରା ଅକ୍ଷୟ, ଅବ୍ୟୟ, ଅଜର, ଅମର ବ୍ରହ୍ମଙ୍କର—ସେହି ସତ୍ୟସ୍ୱରୂପ ପରମାତ୍ମାଙ୍କର—ଜ୍ଞାନ ଲାଭ ହୁଏ । ବ୍ରହ୍ମହିଁ ଉପନିଷଦର ମୁଖ୍ୟ ବିଷୟ ଅଟେ । ଆର୍ଯ୍ୟଋଷିମାନେ ଏହି ଚରମଜ୍ଞେୟ ବ୍ରହ୍ମଙ୍କ ବିଷୟ ଉପନିଷଦ୍-ମାନଙ୍କରେ ରଖି ଯାଇଅଛନ୍ତି । ଏହି ବ୍ରହ୍ମତତ୍ତ୍ୱକୁ ହୃଦୟଙ୍ଗମ କରିବା ପାଇଁ ଆଉ ଦୁଇଗୋଟି ତତ୍ତ୍ୱ ( ଜୀବ ବା ପରା ପ୍ରକୃତି ଓ ଜଡ଼ ବା ଅପରା ପ୍ରକୃତି ) ହୃଦୟଙ୍ଗମ କରିବାକୁ ହେବ । ପଞ୍ଚ ମହାଭୂତ ଆଦି ଜଡ଼ଜଗତ୍ ବ୍ରହ୍ମଙ୍କ ଅପରା ପ୍ରକୃତି ଓ ଜୀବ-ଜଗତ୍ ବ୍ରହ୍ମଙ୍କ ପରା ପ୍ରକୃତି । ଋଷିମାନେ ଉପନିଷଦ୍‌ମାନଙ୍କରେ ଯେଉଁ ସତ୍ୟର ପ୍ରଚାର କରି ଯାଇଅଛନ୍ତି, ତାହା ସେମାନଙ୍କର ଶୁଣା ବା କଳ୍ପିତ କଥା ନୁହେ । ତାହା ସେମାନଙ୍କର ପ୍ରତ୍ୟକ୍ଷୀକୃତ ସନାତନ ସତ୍ୟ ଅଟେ । ଏହି ବ୍ରହ୍ମଙ୍କ ଉପଲବ୍ଧି ପାଇଁ ମନୁଷ୍ୟର ବୁଦ୍ଧି—ପ୍ରୟୋଗ (Intllect) ଯଥେଷ୍ଟ ନୁହେଁ; ଏଥିପାଇଁ ବୋଧି-ପ୍ରୟୋଗ (Intuition) ଲୋଡ଼ା ।

ପ୍ରାଚ୍ୟମାନଙ୍କ ବ୍ରହ୍ମବିଦ୍ୟା ଆଧୁନିକ ବିଜ୍ଞାନର ଅନୁମୋଦିତ ନୁହେ ଓ ଦୁର୍ବୋଧ ରହସ୍ୟବାଦ (Mysticism) ଜଡ଼ିତ ବୋଲି ପାଶ୍ଚାତ୍ୟମାନେ କହୁଥିଲେ । କିନ୍ତୁ ଆନନ୍ଦର ବିଷୟ ଯେ, କ୍ରମେ କ୍ରମେ ପାଶ୍ଚାତ୍ୟ ମନୀଷୀମାନେ ମନ-ମୁନ-ଚଇତନ ବା ପ୍ରଜ୍ଞା ବା ବୋଧିକୁ ଖଟାଇ ଆର୍ଯ୍ୟଋଷିମାନଙ୍କ ପ୍ରଦର୍ଶିତ ସନାତନ ସତ୍ୟକୁ ସ୍ୱୀକାର କରୁଅଛନ୍ତି ।

ଥିଓଜଫିକାଲ୍ ସୋସାଇଟି (ବ୍ରହ୍ମବିଦ୍ୟା ସମାଜ)ର ସହକାରୀ ସଭାପତି ମନୀଷୀ ଶ୍ରୀଯୁକ୍ତ ହୀରେନ୍ଦ୍ରନାଥ ଦତ୍ତ ଏମ୍. ଏ., ବି. ଏଲ୍, ପି. ଆର୍. ଏସ୍, ବେଦାନ୍ତରତ୍ନ ମହାଶୟ ତାଙ୍କର "ବେଦାନ୍ତ ପରିଚୟ", "ଉପନିଷଦ୍", "ଗୀତାୟ ଈଶ୍ୱରବାଦ" ଆଦି ଗ୍ରନ୍ଥରେ ବେଦାନ୍ତର ଆଲୋଚ୍ୟ ଏହି ବ୍ରହ୍ମବାଦ ବିଷୟରେ ବହୁ ତଥ୍ୟକୁ ସର୍ବସାଧାରଣଙ୍କ ବୋଧଗମ୍ୟ କରିବାକୁ ବହୁ ଆୟାସ ସ୍ୱୀକାର କରିଅଛନ୍ତି ଓ ନାନା ଉପନିଷଦରେ ବର୍ଣ୍ଣିତ ତଥାକଥିତ ନାନା ମତବାଦର ସମନ୍ୱୟ ସାଧନ କରିବାକୁ ଚେଷ୍ଟା କରିଅଛନ୍ତି । ପାଶ୍ଚାତ୍ୟ ବିଜ୍ଞାନ ଓ ଦର୍ଶନରେ ବିଚକ୍ଷଣ ପଣ୍ଡିତମାନଙ୍କ ଉକ୍ତିମାନ ଉଦ୍ଧାର କରି ସେ ପ୍ରମାଣିତ କରିଅଛନ୍ତି ଯେ, ପ୍ରାଚ୍ୟ ଆର୍ଯ୍ୟ-ଋଷିମାନଙ୍କର ଏହି ବୈଦାନ୍ତିକ ବ୍ରହ୍ମବାଦକୁ ପାଶ୍ଚାତ୍ୟମାନେ ଗ୍ରହଣ କରିବାକୁ ଆରମ୍ଭ କଲେଣି ।

ଶ୍ରୀ ବିଶ୍ୱନାଥ ବାବା ସେହି ସତ୍-ଚିତ୍-ଆନନ୍ଦମୟ ବ୍ରହ୍ମଙ୍କୁ ସତ୍ୟମହିମାଧର୍ମୀବଲମ୍ବୀମାନଙ୍କ ଧ୍ୟେୟ ବସ୍ତୁ ବୋଲି ପ୍ରଚାର କରି ସେହି ସଚ୍ଚିଦାନନ୍ଦ ବ୍ରହ୍ମଙ୍କୁ ଜାଣିବା, ଚିହ୍ନିବା ଓ ଉପାସନା କରିବା ମାର୍ଗ ତାଙ୍କର ଭିନ୍ନ ଭିନ୍ନ ଗ୍ରନ୍ଥରେ ପ୍ରଦର୍ଶନ କରିଅଛନ୍ତି । ଏହି ଶ୍ରୀମଚ୍ଚିନ୍ମୟବ୍ରହ୍ମଗୀତା ଉପନିଷଦୁକ୍ତ ବ୍ରହ୍ମବାଦର ସାଧାରଣ-ବୋଧ ଆଲୋଚନା ଅଟେ । ସେ ନାନା ଉପନିଷଦରୁ ଯେଉଁ ସତ୍ୟମାନ ପାଇଅଛନ୍ତି, ତାହା ଆମ୍ଭମାନଙ୍କ ଆଗରେ ଆଣି ଉପସ୍ଥାପିତ କରିଅଛନ୍ତି ଏବଂ ମୁଁ ଆଶା କରୁଛି ଯେ, ଏ ଗ୍ରନ୍ଥ ସାହାଯ୍ୟରେ ବ୍ରହ୍ମୋପଲବ୍ଧିର ମାର୍ଗ ସୁଗମ ହେବ ।

ଏ ଗ୍ରନ୍ଥରେ ବାବା ମହୋଦୟ ସତ୍ୟ ମହିମାଧର୍ମର ତତ୍ତ୍ୱମାନ ପଦ୍ୟରେ ବର୍ଣ୍ଣନା କରିଅଛନ୍ତି, ତେଣୁ ସ୍ଥାନେ

ସ୍ଥାନେ ଦୁର୍ବୋଧତା ନିମନ୍ତେ ଅବକାଶ ଘଟିଅଛି । ବର୍ଣ୍ଣନା ନିମନ୍ତେ ପଦ୍ୟ ପରିବର୍ତ୍ତିରେ ଗଦ୍ୟ ବ୍ୟବହାର କରିଥିଲେ ପାଠକମାନେ ବାବା ମହୋଦୟଙ୍କ ପ୍ରତିପାଦିତ ତଥ୍ୟମାନ ଅତିର ସହଜରେ ବୁଝି ପାରିବାକୁ କ୍ଷମ ହୋଇଥାଅନ୍ତେ ବୋଲି ମୋର ବିଶ୍ୱାସ । ପଦ୍ୟ ରଚନାକୁ ଅବୃତ୍ତି କରି ମନେ ରଖିବା ସହଜ ବୋଲି ଅଧିକାଂଶ ପ୍ରାଚୀନ ଗ୍ରନ୍ଥମାନ ପଦ୍ୟାକାରରେ ରଚିତ ହୋଇଥିବା ଦେଖାଯାଏ । ବାବା ମହୋଦୟ ସେହି ପ୍ରାଚୀନ ପନ୍ଥା ଅନୁସରଣ କରିଅଛନ୍ତି । ମୂଳତଃ ଯେଉଁ ଉଦ୍ଦେଶ୍ୟ ଘେନି ଏ ଗ୍ରନ୍ଥ ଲିଖିତ ହୋଇଅଛି, ଏ ଗ୍ରନ୍ଥଦ୍ୱାରା ସେ ଉଦ୍ଦେଶ୍ୟ ଅବଶ୍ୟ ସଫଳ ହେବ ବୋଲି ମୋର ଧାରଣା ଜନ୍ମୁଅଛି । ବାବା ମହୋଦୟ ଯାଯାବର ସନ୍ନ୍ୟାସୀ ହୋଇ ଏକ ସ୍ଥାନରେ ଏକ ରଜନିରୁ ଅଧିକ କାଳ ଯାପନ ନ କରି ମୁଦ୍ଧା ବହୁସଂଖ୍ୟକ ସୁକଠିନ ଧର୍ମଶାସ୍ତ୍ର ଅଧ୍ୟୟନ କରି ସତ୍ୟମହିମାଧର୍ମର ନିଗୂଢ଼ ତଥ୍ୟମାନଙ୍କୁ ବୋଧଗମ୍ୟ କରିବା ନିମନ୍ତେ ଯେଉଁ ସାଧନାରେ ଅହରହଃ ବ୍ରତୀ ହୋଇଅଛନ୍ତି, ତାଙ୍କର ସେ ଐକାନ୍ତିକ ସାଧନା ଫଳବତୀ ହେଉ, ଏହାହିଁ ମୋର ଅକାଙ୍କ୍ଷା ।

କଟକ
ତା ୪।୯।୬୯ } ଶ୍ରୀ ପ୍ରାଣକୃଷ୍ଣ ପରିଜା

# ଅଧ୍ୟାୟ ସୂଚୀ

# ଶ୍ରୀମଚ୍ଚିନ୍ମୟ ବ୍ରହ୍ମଗୀତା

## ପ୍ରଥମ ଅଧ୍ୟାୟ

### ଅଭୟ ବ୍ରହ୍ମପାଦବର୍ଣ୍ଣନ ଯୋଗ

ଚିନ୍ମୟ ଅଲେଖ ବ୍ରହ୍ମେ ଶରଣ ପ୍ରପନ୍ନ ।
ଚିଦାନନ୍ଦ ପ୍ରଭୁ ସ୍ୱୟଂ ହୋଇ ସୁପ୍ରସନ୍ନ ॥
ସ୍ୱୟଂ ଗୀତା ସ୍ୱୟଂଭାବେ କରଣ ସମ୍ବନ୍ଧ ।
ଭାବବିକାଶର ଜ୍ଞାନ କରନ୍ତୁ ବର୍ଦ୍ଧନ ॥
ଜ୍ଞାନୀମାନେ ଯେଉଁ ପାଦ ଚିନ୍ତି ନ ପାରନ୍ତି ।
ଭାବି ଭାବି କବିମାନେ ସ୍ତୁ-ନାମ ଭଣନ୍ତି ॥
ଯେଉଁ ପାଦରୁ ସମ୍ଭୂତ ବିଶ୍ୱ ଚରାଚର ।
ସେ ପାଦ ମହିମା ବ୍ୟାଖ୍ୟା ଅତି ଅଗୋଚର ॥
ବେଦବେଦାନ୍ତରେ ପାଦ ହୋଇଛନ୍ତି ବର୍ଣ୍ଣନ ।
ପ୍ରଣବସ୍ୱରୂପ ନାମ କରନ୍ତି ଧାରଣ ॥
ତ୍ରୟ ମାତ୍ରାରେ ଛନ୍ଦନ୍ତି ତ୍ରୟ ଅବସ୍ଥାକୁ ।
ସୃଷ୍ଟି ସ୍ଥିତି ଲୟ କରୁଅଛନ୍ତି ଜଗତକୁ ॥
ଅକାରଟର ଅବସ୍ଥା ଅଟେ ଜାଗ୍ରତର ।
ଅଧିପତି ଅଟନ୍ତି ଯେ ବିଶ୍ୱ ବୈଶ୍ୱାନର ॥
ଶୁଭାଶୁଭ ପଥେ ପ୍ରାଣୀ ହୋଇ ଜାଗରିତ ।
ସ୍ୱ-ସ୍ୱ କର୍ମାଧୀନେ ହେଉଥାନ୍ତି ପ୍ରଧାବିତ ॥

କର୍ମଫଳ ଭୁଞ୍ଜି ପ୍ରାଣ ନ ହୁଏ ସନ୍ତୋଷ ।
ଅନ୍ତଃକରଣରେ ତହୁଁ ଜନ୍ମାଏ ବିଦ୍ୱେଷ ॥
ସ୍ଥୂଳ ବିଶେଷ ବିଷୟ ହୋଇଣ ଗୋଚର ।
ସୁଖ ଦୁଃଖ ଭୋଗ ଅନ୍ତେ କରଇ ବିଗ୍ରହ ।୧୮।
ବିଶ୍ୱ ଅଗ୍ରରେ ଭ୍ରମନ୍ତି ଅବିବେକଗଣ ।
ଅଭୟ ପାଦ ସ୍ମରନ୍ତି ବିବେକୀ ଯେ ଜନ ॥
ଉକାର ଅକ୍ଷର ମାତ୍ରା ଶରୀର ଯେ ସୂକ୍ଷ୍ମ ।
ଅଧୀଶ୍ୱର ତଥିପରେ ତୈଜସ ସୁନ୍ଦରାତ୍ମ ॥
ଯେଉଁ ରୂପେ ସ୍ଥୂଳ ଭୋଗ ଭୁଞ୍ଜନ୍ତି ବିଷୟ ।
ସେହିରୂପେ ସ୍ୱପ୍ନବଶେ ଜାଅନ୍ତି ଆଶ୍ରୟ ॥
ବିଧିବାସନାରେ ପ୍ରାଣୀ ହୁଅନ୍ତି ନିଦ୍ରିତ ।
ଅଜ୍ଞ କଳନାନୁସାରେ ହୁଅନ୍ତି ମୋହିତ ॥
ଦ୍ୱିତୀୟ ପାଦ ଅଟ୍ଟୀନେ ଏହିରୂପ ସ୍ଥିତ ।
ଦେବ ନର ସେହି ପଥେ ଯାତାୟାତ ହୋନ୍ତି ।
ବିଶୁଦ୍ଧ ସତ୍ତ୍ୱ ଯାହାର ପରମ ପୀରତ ।
ଅଜ୍ଞାନ ସ୍ୱପ୍ନଗୋଚରେ ମୋହିତ ନୁହନ୍ତି ॥
ମକାର ଅକ୍ଷର ମାତ୍ରା ଅଜ୍ଞାନ ସପ୍ତ ।
କାରଣ ଶରୀର ମଧ୍ୟେ ଯାହାର ସୁବ୍ୟାପ୍ତି ॥
ଜାଗ୍ରତ ସ୍ୱପ୍ନ ଯହିଁରେ ହୁଅଇ ଅଦୃଶ୍ୟ ।
ଭବ ବିକାର ବାସନା ନ ହୁଏ ପ୍ରକାଶ ॥
ଅଜ୍ଞ ପ୍ରଗାଢ଼ ନିଦ୍ରାରେ ହେଲେ ଅଚେତନ ।
ପ୍ରପଞ୍ଚ ସ୍ୱପ୍ନ ସେସ୍ଥାନୁ କରେ ପଳାୟନ ॥
ପ୍ରାଜ୍ଞ ଈଶ୍ୱର ସେସ୍ଥାନେ ଥାନ୍ତି ଅଧିପତି ।
କର୍ମବାସନାନୁସାରେ ତେଜ ପ୍ରକାଶନ୍ତି ।୨୦।

ଆନନ୍ଦ ଉପଦ୍ରବରେ ଚେତନା ବଢ଼ଇ ।
ମାୟାରେ ଏ ଲୀଳାଭୂମି ଅଜ୍ଞାତ ହୁଅଇ ॥
ତ୍ରିପାଦ ଅଧିଷ୍ଠାନସ୍ଥିତ ଏମନ୍ତ ପ୍ରକାର ।
ତ୍ରିଗୁଣ ଯନ୍ତ୍ର ମଧ୍ୟରୁ ନୁହଇ ବାହାର ॥
ଉତ୍ପତ୍ତି ସ୍ଥିତି ପ୍ରଳୟ କାରଣ ସ୍ୱରୂପ ।
ସର୍ବଜ୍ଞ ଈଶ୍ୱର ଯହିଁ ଅଟନ୍ତି ଅଧିପ ॥
ତଦଧୀନେ ଜୀବଗଣ ସଞ୍ଚରିତ ହୋନ୍ତି ।
ପ୍ରକୃତ ବିକୃତ ଗୁଣେ ନିମଜ୍ଜିତ ଥାନ୍ତି ॥
ପରମ ପାଦେ ଭରିତ ଅଟେ ଯେ ଆତ୍ମାର ।
ମାୟା ତ୍ରିଗୁଣ ଯନ୍ତ୍ରକୁ ତେଜଇ ନିକର ॥
ଓଁକାର ସ୍ୱରୂପ ଅଟେ ଯେଉଁ ତ୍ରୟପାଦ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ସେହି ତ୍ରିଗୁଣରେ ସ୍ତବ୍ଧ ॥
ସକାମେ ନିଷ୍କାମେ ହୁଏ ତ୍ରୟ ଦେବଗଣ ।
ମୁକ୍ତ ପ୍ରାପ୍ତ ହୋନ୍ତି ନିର୍ଗୁଣଙ୍କୁ କଲେ ଧ୍ୟାନ ॥
ବଦ୍ଧ ହୋନ୍ତି ସକାମରେ ସ୍ୱସ୍ୱୋପାଧି ବନ୍ଧ ।
ଅଜ୍ଞାନ ଆବରଣରେ ବିମୋହିତ ହୋଇ ॥
ତ୍ରୟ ପାଦରେ ରଚିତ ଏ ତ୍ରୟ ଭୁବନ ।
ପ୍ରଣବସ୍ୱରୂପ ନାମ କରନ୍ତୁ ଧାରଣ ॥
ଦେବ ନର ଗନ୍ଧର୍ବ କିନ୍ନର ଆଦି ଯେତେ ।
ବ୍ୟକ୍ତିଭାବେ ଶରୀର ଧରନ୍ତି ସେହିମତେ । ୩୦ ।
ସେହିଭାବେ ଚୈତନ୍ୟର ବେନିଭାବେ ଅଂଶ ।
ଉପାଧି ଭେଦରେ ଆତ୍ମା ହେଉଅଛି ଦୃଶ୍ୟ ॥
ବେଦରେ କଥିତ ହେଲା ନାମ ଯେ ଓଁକାର ।
ତ୍ରିପାଦେ ରଚିତ ଅଛି ଗାୟତ୍ରୀ ଅକ୍ଷର ॥

ସଗୁଣ ଧ୍ୟାନସଂଯୁକ୍ତ ମନ୍ତ୍ର ଛନ୍ଦାଦିରେ ।
ବର୍ଣ୍ଣନ ହୋଇ ରହିଛି ଗୀତା ଶାସ୍ତ୍ରାଦିରେ ॥
ପ୍ରଣବ ଗାୟତ୍ରୀ ମନ୍ତ୍ର କରଣ ସ୍ମରଣ ।
ସ୍ୱ ସ୍ୱ ଇଷ୍ଟ ଦେବତାଙ୍କୁ କରିବ ଅର୍ଚ୍ଚନ ॥
ତ୍ରିପାଦ ମଧ୍ୟରେ ଦେବଗଣ ଛନ୍ତି ଯେତେ ।
ଅର୍ଚ୍ଚନା ବନ୍ଦନା ଭାବେ ବଶ ହୋନ୍ତି ଚତେ ॥
ସେହିରୂପେ ପ୍ରାଣୀମାନେ କର୍ମ ଆଚରନ୍ତି ।
ନିଷ୍କାମ ଭକ୍ତିମାର୍ଗରେ ଗମି ନ ପାରନ୍ତି ॥
ସକାମ କର୍ମଫଳକୁ ଭୁଞ୍ଜି ପ୍ରାଣୀମାନେ ।
ଜନ୍ମ ମୃତ୍ୟୁ ଲଭୁଥାନ୍ତି ନିଜ ହେତୁ ଗୁଣେ ॥
ତ୍ରିପାଦ ଊର୍ଦ୍ଧ୍ୱ ଶୂନ୍ୟରେ ଅଛି ଏକ ପାଦ ।
ଯହିଁରୁ ସମ୍ଭୂତ ହୁଏ ଅନାହତ ନାଦ ॥
ଯାହାର ମହିମା ବେଦ ବର୍ଣ୍ଣି ନ ପାରଇ ।
ସର୍ବ ଜୀବମାନଙ୍କ ସେ ଆଶ୍ରୟ ଅଟଇ ॥
ଯେଉଁ ପାଦ ଧ୍ୟାୟୁଥାନ୍ତି ସିଦ୍ଧ ମୁନିଜନ ।
ଯେ ପାଦେ ସର୍ବଦା ଅର୍ପିଥାନ୍ତି ପ୍ରାଣ ମନ । ୪୦ ।
ଯେଉଁ ପାଦ କଳ୍ପନାରେ କଳ୍ପନା ହଜଇ ।
ଯାହାକୁ ଚିନ୍ତିଣ ଚିତ୍ତ ନିଶ୍ଚିନ୍ତ ହୁଅଇ ॥
ଯେଉଁ ପାଦେ ଅହଙ୍କାର ଅହଙ୍କାରି ହେଲେ ।
ସଂସାରେ ନିଷ୍କାମ ହୋଇ ରହେ ସଦାକାଳେ ॥
ଯେଉଁ ପାଦକୁ ନିଶ୍ଚୟ କରଇ ସୁବୁଦ୍ଧି ।
ଯେ ପାଦ ଆଶ୍ରୟେ ଭକ୍ତେ ତରନ୍ତି ଭବାବ୍ଧି ॥
ଯେଉଁ ପାଦ ତ୍ରିପାଦର ଆଶ୍ରୟ ଅଟଇ ।
ଯେଉଁ ମହିମାରୁ ପ୍ରାଣପ୍ରକୃତି ହୁଅଇ ॥

ଯେଉଁ ପଦରୁ ସମ୍ଭୂତ ଓଁକାର ଅକ୍ଷର ।
ଯାହାର ମହିମା ବର୍ଣ୍ଣି ନ ପାରେ ଶଙ୍କର ॥
ଯେଉଁ ପାଦରୁ ନିଗମ ହୋଇଅଛି ଜାତ ।
ଯାହାକୁ ନିଗମ କହି ନ ପାରଇ ଜନ୍ତ ॥
ଯେଉଁ ପାଦରୁ ସର୍ବଦା ଅମୃତ ଝରଇ ।
ଯାହା ପାନ କଲେ ଜୀବ ମୃତ୍ୟୁକୁ ଜିଣଇ ॥
ଯେଉଁ ପାଦକୁ ବେଦାନ୍ତ ବର୍ଣ୍ଣଇ ଚତୁର୍ଥ ।
ଯାହା ଜ୍ଞାତ ହେଲେ ଜ୍ଞାନୀ ହୁଅଇ କୃତାର୍ଥ ॥
ଯେଉଁ ପାଦ ତୁରୀୟ ନାମରେ ଅଟେ ଖ୍ୟାତ ।
ଯେ ପାଦ ତେଜରେ ତେଜ ପ୍ରକାଶନ୍ତି ଭୂତ ॥
ଯେ ପାଦରେ ପରମାତ୍ମା ସଦା ଅଧିଷ୍ଠିତ ।
ଯେ ପାଦ ନୁହଇ ନୟନରେ ପ୍ରକାଶିତ ।୫୦।
ସେହି ପାଦରେ ସର୍ବଦା ଶରଣ ମୋହର ।
ସର୍ବଜୀବଙ୍କର ସେହି ଶରଣ ସୋଦର ॥
ସେହି ଅଭୟ ପାଦରେ ଶରଣ ମାଗଇଁ ।
ଶରଣପଞ୍ଜର ସେହି ଜଗତେ ବୋଲାଇ ॥
ସେହି ଏକ ଜୀବାତ୍ମାର ଶରଣରକ୍ଷଣ ।
ଜନ୍ମ ବନ୍ଧ ଦୋଷରୁ ସେ କରବେ ତାରଣ ॥
ସେହି ପାଦ ଚର୍ମ ରକ୍ତ ମାଂସ ଅସ୍ଥି ନୁହେ ।
ଉପାଧି କଳ୍ପିତଭାବେ ବର୍ଣ୍ଣିବ ବା କଏ ?
ସେହି ପଦେ ତ୍ରିକାଳରେ ପଶୁଛି ଶରଣ ।
ମାୟାରେ ଅଦୃଶ୍ୟ ରହି କରବେ କାରଣ ॥
ସେହି ପାଦଟି ଅଟଇ ଅଭୟ ମଣ୍ଡଳ ।
ନିଃଶବ୍ଦ ଭୁବନ ସେହି ନୁହଇ ଚଞ୍ଚଳ ॥

ସେହି ପାଦର ଉପମା ନିଜଗତେ ନାହିଁ ।
ତାହାର ଉପମା ଅବା କେ ପାରିବ କହି ॥
ସେହି ସର୍ବ ଶିରପରେ ଅଟେ ଶିରୋମଣି ।
ଶିରରେ ବହୁଛନ୍ତି ସଦା ଯାକୁ ସପ୍ତଫଣି ॥
ସେହି ପାଦହିଁ ସଗୁଣ ସ୍ୱରୂପୁଁ ଅତୀତ ।
ସେହି ଜ୍ଞାନ ବିଜ୍ଞାନର ଅଟନ୍ତି ଅଦ୍ୱୈତ ॥
ସେହି ପାଦପଦ୍ମରେଣୁ ଚୈତନ୍ୟସ୍ୱରୂପ ।
ସର୍ବଭୂତେ କ୍ରୀଡ଼ା କରେ ହୋଇଣ ନିର୍ଲେପ ॥୨୦॥
ସେହି ପାଦ ମୁକ୍ତ ପୁରୁଷଙ୍କ ପର ଧାମ ।
ଦ୍ୱିତୀୟ ସ୍ୱରୂପ ନୁହେ ତଥି ନାହିଁ କାମ ॥
ସର୍ବ ଅବତାର ସେହି ପାଦରୁ ଉତ୍ପନ୍ନ ।
ସ୍ଥିତି ଲଭି ମର୍ତ୍ତ୍ୟପୁରେ କରନ୍ତି ଗମନ ॥
ସର୍ବ ଦେବେଶ୍ୱର ସେହି ପାଦ ଅନୁସରି ।
ଦେବେଶ ପଦରେ ହେଲେ ସ୍ୱର୍ଗେ ଅଧିକାରୀ ॥
ଯେତେ ଅବତାର ହୋଇଥିଲେ ଅବନୀରେ ।
ଅଭୟ ପାଦକୁ ଶନ୍ତି ପ୍ରାପ୍ତ ଅଭୟରେ ॥
ଅଭୟ ପାଦର ନାହିଁ ଉତ୍ପତ୍ତି ପ୍ରଳୟ ।
ପ୍ରଳୟ ଯୋଗରେ ସେହି ନୁହଇ ବିଳୟ ॥
ଚିନ୍ମୟ ଆକାରେ ସେହି ନିତ୍ୟ ଅବସ୍ଥିତ ।
ମାୟା ଅବରଣରେ ସେ ଅଟଇ ଅଖ୍ୟାତ ॥
ସେହି ପାଦ ସର୍ବଜୀବ ଆତ୍ମାର ଜୀବନ ।
ଏକାଗ୍ର ମନରେ ସେହି ହୁଅଇ ମନନ ॥
ଆତ୍ମାମଧ୍ୟେ ପ୍ରକାଶିଲେ ସେ ଚିନ୍ମୟ ଜ୍ୟୋତି ।
ନିର୍ବିକଳ୍ପ ହୋଇ ଆତ୍ମା ଲଭେ ଚିରଶାନ୍ତି ॥

ସେହି ପାଦ କମ୍ପନରୁ ଅଶେଷ ବ୍ରହ୍ମାଣ୍ଡ ।
ବିଚିତ୍ରରେ ବିରଚିତ ହୋଇଛି ପିଣ୍ଡାଣ୍ଡ ॥
ନିଷ୍କମ୍ପରେ ନିତ୍ୟ ସେହୁ ଅଟେ ବିଦ୍ୟମାନ ।
ତାହାଂକ ମହିମା ବର୍ଣ୍ଣିବାକୁ ଅକ୍ଷମ ।୭୦।
ଅମାପ ଅଲେଖ ପୁରୁ ସେ ପାଦକୁ କହି ।
ପରାତ୍ପର ପରମାତ୍ମା ତଥି ଛନ୍ତି ରହି ॥
ଅଭୟ ପାଦ ଚେତନେ ଚେତନା ରହିଛି ।
ସେହି ଚେତନାରେ ପାଦ ଗୋଚର ହେଉଛି ॥
ସେହି ପାଦ ଗୋଚରକୁ ବ୍ରହ୍ମଜ୍ଞାନ କହି ।
ଅଜ୍ଞାନ ତମିର ଛାୟା ସେ ତେଜରେ ନାହିଁ ॥
ବିବେକବିହୀନ ଜ୍ଞାନ ଜଗତେ ଯେ ଅଛି ।
ଆତ୍ମାର ସଦ୍‌ଗତି ମାର୍ଗ ତହିଁ ନାହିଁ କିଛି ॥
ବୈଷୟିକ ଜ୍ଞାନ ଯେତେ ହୋଇଲେ ବର୍ଦ୍ଧନ ।
ଇନ୍ଦ୍ରିୟ ଗୁଣରେ ଆତ୍ମା ହୁଅଇ ବନ୍ଧନ ॥
ନିର୍ବିଷୟ ବ୍ରହ୍ମଜ୍ଞାନ ଆତ୍ମାର ପ୍ରଦୀପେ ।
ବିଷୟ ପ୍ରବଳ ନାହିଁ ତାହାର ସମୀପେ ॥
ବ୍ରହ୍ମଜ୍ଞାନାଗ୍ନିକୁ ସଦା କଲେ ଜାଗରିତ ।
ପ୍ରକୃତ ଇନ୍ଦ୍ରିୟଗଣ ହୋନ୍ତି ପରାଭୂତ ॥
ଜାଗତିକ ଜ୍ଞାନ ଯେତେ ଅଜ୍ଞାନର କର୍ମ ।
ତହିଁରେ ବିନାଶ ନୋହେ ଭବଭୟ ଭ୍ରମ ॥
ବ୍ରହ୍ମଜ୍ଞାନ ପାଦ ଯେହୁ ହୁଅଇ ପ୍ରାପତ ।
ବ୍ରହ୍ମାନନ୍ଦର ବିହରେ ରସିଣ ନିରତ ॥
ଅଭୟ ବ୍ରହ୍ମ ପାଦରେ ଯେ ପଶେ ଶରଣ ।
ଅଭୟ ବ୍ରହ୍ମ ତାହାକୁ କରନ୍ତି କାରଣ ।୮୦।

ଅନୁମାନ ବିବେକୀ ଯେ ଅଛନ୍ତି ପର ଜ୍ଞାନୀ ।
ଅବ୍ୟକ୍ତ ଅଭୟ ପାଦ ତତ୍ତ୍ୱ ଦୃଢ଼େ ଜାଣି ॥
ସେହୁ ପାଦକୁ ଭଜନ କରନ୍ତି ସତତ ।
ପ୍ରପଞ୍ଚ ପାଦରେ ବାଦୀ ନ ହୋଇ ନିରତ ॥
ନିଷ୍ପ୍ରପଞ୍ଚ ପର ପାଦ ପର ତତ୍ତ୍ୱ ଘେନି ।
ନିରବଧି ସେବା କରୁଥାନ୍ତି ଅତ୍ମଜ୍ଞାନୀ ॥
ସ୍ଥୂଳ ପାଦକୁ ସେମାନେ ନ ଭଜି ଚିତ୍ତରେ ।
ଏକ ପାଦରେ ପୀରତି କରନ୍ତି ସତ୍ତ୍ୱରେ ॥
ଯେ ମାନେ ପ୍ରପଞ୍ଚବାଦୀ ସ୍ୱଳ୍ପବୁଦ୍ଧି ନର ।
ଏକଭକ୍ତି ବିନେ ଭବୁଁ ନ ହୁଅନ୍ତି ପାର ॥
ଏକ ପାଦ ସ୍ଥୂଳ ସୂକ୍ଷ୍ମ ପରମିତ ନୁହେ ।
ଅପ୍ରମେୟ ସ୍ୱରୂପରେ ବିରାଜିତ ଥାଏ ॥
କାରଣର କାରଣ ସେ କୈବଲ୍ୟ ଅଟନ୍ତି ।
ଜ୍ଞାନ ଅଷ୍ଟାଙ୍ଗ ଯୋଗରେ ଯୋଗୀଏ ଚିନ୍ତନ୍ତି ॥
ଯେ ଜ୍ଞାନ ଷୋଡ଼ଶ ଉପଚାରେ ପୂଜନୀୟ ।
ଯେଉଁ କୈବଲ୍ୟ ପାଦ ଯେ ଅଟେ ସୁନିଶ୍ଚୟ ॥
ପରମାତ୍ମା ପୂଜାବିଧି କରନ୍ତି ଗ୍ରହଣ ।
ଅଦ୍ୱିତୀୟ ତାତ୍ପର୍ଯ୍ୟର ଅଟନ୍ତି ଶ୍ରବଣ ॥
କର୍ମଯୋଗ ବିଧି ବିଧାନର ପୂଜାମାନ ।
ଦ୍ରବ୍ୟମୟ କ୍ରିୟା ଆଦି ସ୍ଥୂଳ ସୂକ୍ଷ୍ମ ଧ୍ୟାନ ।୧୦।
ସାଧ୍ୟ ସାଧନ ଫଳରୁ ଅଟନ୍ତି ଅତୀତ
ଅନାପ୍ତ ବାକ୍ୟରେ କେବେଁ ନୁହନ୍ତି ସୁଚିତ ॥
ବିବେକାନୁଭବ ଶ୍ରୁତିଶୀର୍ଷ ଗୁରୁବାକ୍ୟ ।
ପ୍ରକାଶ ହୁଅନ୍ତି ଏକ ପାଦ ଅତ୍ମ ଅଟଳ ॥

ସେହି ଏକ ଅଦ୍ୱିତୀୟ ପାଦରେ ଶରଣ ।
ସେହି ଅନ୍ତରେ ପ୍ରକାଶ ହୋଇଛି ଜୀବନ ॥
ଚିନ୍ମୟ ପରମ ବ୍ରହ୍ମ ପରମାତ୍ମା ସେହି ।
ସେହି ପାଦରେ ପ୍ରଣତ କରୁଅଛି ଦେହୀ ॥
ଅଲେଖ ବ୍ରହ୍ମ ପଦ୍ମରେ କରଇଁ ଜଣାଣ ।
ସେହି ଏକା ମୋ ଆତ୍ମାର ଫେଡ଼ିବେ ବନ୍ଧନ ॥
ସେହି ଏକ ପ୍ରଭୁ ପାଦ କରୁଛି ସ୍ମରଣ ।
ଅବିଦ୍ୟା ମାୟା ଉପାଧି କରିବେ ମୋଚନ ॥
ଅହେ ମହାପ୍ରଭୁ ! ତବ ମହିମାରେ ଖ୍ୟାତ ।
ହୋଇଅଛି ଏ ଜୀବନ ଏ ଧରିରେ ଜାତ ॥
ସ୍ୱତେଜ ମହିମା ତବ ଅନାୟତ୍ତ ନୋହେ ।
ଆତ୍ମାର ଅହଂ ମମତା ନ ରହୁ ଏ ଦେହେ ॥
ସର୍ବଦା ମମତା ହେଉ ତବ ପାଦତଳେ ।
ସାଷ୍ଟାଙ୍ଗରେ ଶରଣ ପଶୁଛି ସଦାକାଳେ ॥
ଶରଣାଗତକୁ ରଖ ଶରଣପଞ୍ଜରେ ।
ଏହି ପ୍ରାର୍ଥନା କରଇଁ ଅଭୟ ପଦ୍ମରେ । ୧୦ ।

ଇତି ଶ୍ରୀମଚ୍ଚିନ୍ମୟ ବ୍ରହ୍ମଗୀତା ଅଦ୍ୱିତୀୟ ଚିନ୍ମୟ—
ଅଭୟ ପାଦ ବର୍ଣ୍ଣନଯୋଗୋ ନାମ
ପ୍ରଥମୋଽଧ୍ୟାୟଃ ।

---

# ଦ୍ୱିତୀୟ ଅଧ୍ୟାୟ

## ବିଶୁଦ୍ଧ ନିଷ୍କାମ ଭକ୍ତିଯୋଗ

ଅଭୟ ପାଦ ମହିମା ଅଗାଧ ଅଟଇ ।
ଯାହାର ମହିମା ସର୍ବ ଜଗତ ସୃଜଇ ॥
ସେହି ମହିମାକୁ କରି ନୁହଇ କଳନ ।
ସ୍ମରଣ କରି ଲେଖିଲେ ନ ସରେ ରଚନ ॥
ସେହି ପାଦରେ ଭକତି କରେ ଯେଉଁ ଜନ ।
ନିଶ୍ଚୟ ପ୍ରାପତ ହୁଏ ସେହି ପାଦେ ସ୍ଥାନ ॥
ପୂର୍ବ ସୁବାସନା ଥିଲେ ଭକ୍ତି ହୁଏ ପ୍ରାପ୍ତ ।
ଭକ୍ତିସାଧନ ଯୋଗରେ ମୁକ୍ତି ସମାଗତ ॥
ଶାସ୍ତ୍ର ଅଧ୍ୟୟନ ସାଧୁଜନଙ୍କ ସଙ୍ଗରେ ।
ପୂର୍ବ ବାସନା ପ୍ରକାଶ ହୁଅଇ ସତ୍ୱରେ ॥
ସୁଭାଗ୍ୟରେ ଯଦି ପ୍ରାପ୍ତ ସୁସାଧୁଙ୍କ ସଙ୍ଗ ।
ତହିଁରୁ ଜାତ ହୁଅଇ ଭକ୍ତିର ତରଙ୍ଗ ॥
ସେହି ଭକତ ଅଟଇ ଅତି ସୁନିର୍ମଳ ।
ପରମପଦ ଧ୍ୟାନରେ ହୁଅଇ ବିହ୍ୱଳ ॥
ବିହିତାନୁଷ୍ଠାନ କରେ ପ୍ରଭୁଙ୍କ ନାମରେ ।
ଭୟ ନ କରେ କଦାଚ ସଂସାରମାର୍ଗରେ ॥
ଅଭୟ ପାଦରେ ଧ୍ୟାନ କରେ ନିରବଧି ।
ସେହି ଭକତ ତାରଇ ଭବଭୟ ବ୍ୟାଧି ॥
ଅହେ ମୁକ୍ତିକାମେ କର ସୁସାଧୁଙ୍କ ସଙ୍ଗ ।
ସାଧୁସେବା ଭକତିର ଅଟେ ମୁଖ୍ୟ ଅଙ୍ଗ । ୧୦ ।

ଶାସ୍ତ୍ରସମୂହରୁ କରିବ ସାର ସଂଗ୍ରହଣ ।
ଗୁରୁବାକ୍ୟ ସହିତରେ କରିବ ମିଳନ ॥
ସ୍ୱାନୁଭବ ବିଗୃହରେ କରିବ ମାର୍ଜ୍ଜନା ।
ଆଶ୍ରୟ ବ୍ରହ୍ମପାଦକୁ କରିବ ଭାବନା ॥
ବିଗୃହ କରିବ, ମୁଁ ଯେ କିଏ ଏ ସଂସାରେ ।
କାହୁଁ ଜନ୍ମିଅଛୁ, କରିବା କିଏ କିପୁରରେ ।
ଏ ଅତ୍ମାର ଉପାଦାନ କାରଣ ଯେ ଅଛୁ ।
ସେହି ଉପାଦେୟ ପଦ ଶୀଘ୍ର ଧର ବାଛୁ ॥
ଅନୁଭବ ଶାସ୍ତ୍ର ଗୁରୁ ବାକ୍ୟ ଭିନ୍ନ ଭିନ୍ନ ।
ଭକ୍ତିଯୋଗ ସାଧନର ଅଟେ ବିଡ଼ମ୍ବନ ॥
ଆତ୍ମାର ସଦ୍‌ଗତିମାର୍ଗ ଯେଉଁ ବାକ୍ୟେ ନାହିଁ ।
ଲୋକପ୍ରବାଦ ଭାବରେ ନ ଭ୍ରମିବ ତହିଁ ॥
ସାଧନା ସିଦ୍ଧି ଯେତେକ ଅଷ୍ଟ ଯେ ଐଶ୍ୱର୍ଯ୍ୟ ।
କର୍ମବନ୍ଧନର ଏହୁ ଅଟଇ ତାତ୍ପର୍ଯ୍ୟ ॥
ସାଲୋକ୍ୟାଦ ମୁକ୍ତିରେ ଆତ୍ମାର ଭେଦ ରହେ ।
ଆବୃତ୍ତି ପଦରୁ କେବେ ନିବର୍ତ୍ତିତ ନୋହେ ॥
ଐଶ୍ୱର୍ଯ୍ୟ ଭୋଗରେ ସଦା ରହେ ଅନୁରକ୍ତ ।
ଭୋଗାନ୍ତେ ପୁନଃ ହୁଅଇ ସୁଖ ଦୁଃଖ ପ୍ରାପ୍ତ ॥
ସଲୋକ୍ୟସାରୂପ୍ୟ ପୁଣି ସାମୀପ୍ୟ ସାଯୁଜ୍ୟ ।
ଚତୁର୍ବିଧ ମୁକ୍ତି ଏହୁ ଜୀବକୁ ସହଜ ।୨୦।
ବେଦାନ୍ତେ ବର୍ଣ୍ଣନ ଏହୁ ମୁକ୍ତିର ବିଧାନ ।
କୈବଲ୍ୟ ପଦ ପଞ୍ଚମ ମୁକ୍ତିର ନିଦାନ ।
ବ୍ୟକ୍ତସ୍ୱରୂପ ନାମକୁ ଯେ କରେ ଭଜନ ।
ମର୍ତ୍ତ୍ୟବାସୀ ଲୋକଙ୍କ ସେ କରଇ ଅଧୀନ ॥

ସାଲୋକ୍ୟ ମୁକ୍ତି ପଦରେ ଲଭେ ଅଧିକାର ।
ଦେହାନ୍ତରେ ଗତି ନ ଘଟଇ ପୁନର୍ବାର ॥
ପ୍ରଣବ ତାରକମନ୍ତ୍ର କରଣ ଗ୍ରହଣ ।
ଜପ କରେ ଦିବାରାତ୍ର ହୋଇଣ ମଗନ ॥
ଅଶେଷ ପାପରୁ ସେହି ହୋଇଣ ଉତ୍ତୀର୍ଣ୍ଣ ।
ସୁଦୁର୍ଲ୍ଲଭ ଦେବଦେହ କରେ ସେ ଧାରଣ ॥
ସାରୂପ୍ୟ ମୁକ୍ତିକି ଲଭି ଆନନ୍ଦେ ବିହରେ ।
ଭୋଗାନ୍ତରେ ଜନ୍ମ ଲଭେ ଏହି ଧରଣୀରେ ॥
ଦ୍ୱିଜ ସ୍ୱରୂପକୁ ଯେହୁ କରଣ ଧାରଣ ।
ସଦାଗୃହେ ରହି କରେ ବିଷ୍ଣୁ ପଦ ଧ୍ୟାନ ॥
ସକଳ ଭୂତରେ ଆତ୍ମାଭାବ ବହେ ନିତ୍ୟେ ।
ବିଷ୍ଣୁ ସମୀପେ ରହଇ ସଦାନନ୍ଦ ଚିତ୍ତେ ॥
ସାମୀପ୍ୟ ମୁକ୍ତି ପଦରେ ଲଭି ଅଧିକାର ।
କଳ୍ପାନ୍ତରେ ସେ ପଦରୁ ହୁଅଇ ବାହାର ॥
ଅବ୍ୟକ୍ତ ରୂପକୁ ଯେହୁ ଧ୍ୟାନଯୋଗେ ଚିନ୍ତେ ।
ଗୁରୁ ଉପଦେଶ ମାର୍ଗ ଲଭିଣ ସୁଚିତ୍ତେ ।୩୦।
ସାଯୁଜ୍ୟ ମୁକ୍ତିରେ ତାର ଅଟେ ଅଧିକାର ।
ବିଷ୍ଣୁ ସହ ଯୁକ୍ତ ହୁଏ ଭାବନା ପ୍ରକାର ॥
ଚତୁର୍ବିଧ ମୁକ୍ତିର ବିଧାନ ଏହିରୂପ ।
ମନର କଳ୍ପନା ମତେ ଧରଇ ସ୍ୱରୂପ ॥
ସ୍ଥୂଳ ରୂପ ଯେହୁ ଚିନ୍ତା କରେ ଅବିରତ ।
ଦେହାନ୍ତରେ ସେହୁ ହୁଏ ସ୍ଥୂଳ ଦେହ ପ୍ରାପ୍ତ ॥
ସୂକ୍ଷ୍ମ ସ୍ୱରୂପକୁ ଧ୍ୟାନଯୋଗରେ ଚିନ୍ତିଲେ ।
ସୂକ୍ଷ୍ମ ବସ୍ତୁ ଲଭ୍ୟ ହୁଏ ଦେହାନ୍ତର କାଳେ ॥

ତାଙ୍କେଣିକୁ ଚିନ୍ତାକଲେ ତାରଣେ ମିଶିଛି ।
ଇହଜୀବନରେ ଆତ୍ମା ଯାହାର ଆଶ୍ରିତ ॥
ଅନ୍ତିମ କାଳରେ ସେହିଁ ବସ୍ତୁ ଲଭ କରେ ।
ଭାବନାନୁସାରେ ଭାବୀ ଆକାରକୁ ଧରେ ॥
ଏହିରୂପ ଜନ୍ମ ମୁକ୍ତି ବିବିଧ ପ୍ରକାର ।
ଅଭୟ ପଦ ବିହୀନେ ଅଟଇ ଅସାର ॥
ଅଭୟ ପାଦରେ ଭକ୍ତି କର ସୁଜନର ।
ଭବଭୟ ତ୍ରିତାପରୁ ହୋଇବ ଉଦ୍ଧାର ॥
ସେହି ପାଦ ଜୀବାତ୍ମାର ଅଟଇ ଜୀବନ ।
ସେହି ପରପାଦେ ଆତ୍ମା [illegible] ମିଳନ ॥
ପ୍ରୟାଣକାଳରେ ପ୍ରାଣ ଦେହ ବିସର୍ଜିଲେ ।
ଆଶ୍ରୟ ପାଦକୁ ପ୍ରାପ୍ତ ଆତ୍ମା ତତକାଳେ । ୪୦ ।
ପରଧାମ ପରପାଦେ କରଇ ବିଶ୍ରାମ ।
ମୃତ୍ୟୁମଣ୍ଡଳରେ ଆଉ ନ ଲଭେ ଜନମ ॥
ବିଶୁଦ୍ଧ ଜ୍ଞାନ ଭକ୍ତିରେ ବିଶୁଦ୍ଧ ପାଦକୁ ।
ବିମଳ ମତିରେ ଭଜ ଅଲେଖ ବ୍ରହ୍ମଙ୍କୁ ॥
ନିରାଲମ୍ବ ପାଦ ସଦା କର ଯେ ଆଶ୍ରୟ ।
ନିର୍ମଳ ପଦକୁ ପ୍ରାପ୍ତ ହେବ ସୁନିଶ୍ଚୟ ॥
ଅଭୟ ପାଦ ଭକତ ହେଉଛି ବର୍ଣ୍ଣନ ।
ଯେଉଁ ଭକତ ଅଟଇ ପରମ ନିର୍ଗୁଣ ॥
କାୟମନୋବାକ୍ୟ କରି ଅତି ସୁନିର୍ମଳ ।
ତ୍ରିପଦ ଊର୍ଦ୍ଧ୍ୱକୁ ଲକ୍ଷ୍ୟ କରଣି ସରଳ ॥

ଅନନ୍ତ ଆକାଶ ତଳେ ଉଭା ହୋଇ ଧୀରେ ।
ମହିମା ଅଲେଖ ବ୍ରହ୍ମ ଧ୍ୱନି ଉଚ୍ଚସ୍ୱରେ ॥
ମୁଖରେ ଗାୟନ କରି ଜଣାଣ ନିୟମ ।
ବେନି ସନ୍ଧ୍ୟା ମୁହୂର୍ତ୍ତରେ କରିବ ପ୍ରଣାମ ॥
ମନୋମଧ୍ୟେ ବ୍ରହ୍ମମନ୍ତ୍ର କରିବ ସ୍ମରଣ ।
ବିଷୟ ରସରୁ ମନ କରି ନିବର୍ତ୍ତନ ॥
ବୁଦ୍ଧି ଅହଙ୍କାର ଚିତ୍ତ ହୋଇବେ ନିବୃତ୍ତ ।
ଚିଦାକାଶ ଭାବନାରେ କରିଲେ ସଂଯୁକ୍ତ ॥
ଜ୍ଞାନେନ୍ଦ୍ରିୟ କର୍ମେନ୍ଦ୍ରିୟଗଣ ଛନ୍ତି ଯେତେ ।
ସ୍ୱ ସ୍ୱ ବିଷୟେ ଭ୍ରମଣ କରୁଥାନ୍ତି ନିତ୍ୟେ । ୫୦ ।
ବ୍ରହ୍ମଦର୍ଶନ କାଳରେ ନିଷ୍କାମ ଧର୍ମ୍ମରେ ।
ନିଯୁକ୍ତ କରିବ ତାଙ୍କୁ ସୁଦୃଢ଼ ଭାବରେ ॥
ଆତ୍ମାପ୍ରାଣ ସହ ଦେହେ ଅଛନ୍ତିଟି ଯେତେ ।
ପ୍ରଭୁ ପାଦ ଦର୍ଶନରେ ଖଟିବେ ସମସ୍ତେ ॥
ଆତ୍ମା ସ୍ୱାମୀର ସମସ୍ତେ ହୋଇଣ ଅଧୀନ ।
ଅଭୟ ପାଦକମଳ କରିବେ ଭଜନ ॥
ବଚନରେ ବ୍ରହ୍ମସ୍ତୁତି ଜଣାଣ ଗାୟନ ।
ବ୍ରହ୍ମ ମହିମା ଉଚ୍ଚାରି କରିବ ବର୍ଣ୍ଣନ ॥
ବନ୍ଦି ଦେବ ସଦା ରହିଥିବ ଆତ୍ମାଧ୍ୟାନେ ।
ଆତ୍ମା ବ୍ୟତୀତ କଦାଚ ନ ଭାବିବ ଅନ୍ୟେ ॥
ଶ୍ରୁତିପଥେ ଦଗ ତାହା କରିବ ଶ୍ରବଣ ।
ଅନନ୍ତ ଶବ୍ଦରେ ପୁରି ଉଠିବ ଗଗନ ॥
ନୟନରେ ଦୃଷ୍ଟିଦେବ ବହୁତା ନିଷ୍ଠଳେ ।
ଊର୍ଦ୍ଧ୍ୱ ଶୂନ୍ୟେ ଲକ୍ଷ୍ୟ ରଖି ନ ଭୁଲି ସଳଳେ ॥

 

ପିଣ୍ଡ ବ୍ରହ୍ମାଣ୍ଡ ଊର୍ଦ୍ଧ୍ୱକୁ କରିବ ସନ୍ଧାନ ।
ଯେଉଁ ତେଜେ ତେଜୀସ୍ଥାନ ଏ ନୟ ଭୁବନ ॥
ରସନା ପ୍ରାପ୍ତ ହୋଇବ ଅନାମିକା ରସ ।
ନିଜ ତମ ଆସ୍ୱାଦରେ ନ ହୋଇଲେ ବଶ ॥
ବରୁଣ ଦେବର ଭକ୍ତ ଅଟଇ ସୁକାର୍ଯ୍ୟ ।
ଶରଣି ଜଣାଣ ପଦେ କରିବ ସାହାଯ୍ୟ । ୨୦ ।
ଅଶ୍ୱିନୀ ଦେବ ଆଘ୍ରାଣ କରେ ଅବିରତ ।
ସଂସାର ଆମୋଦେ ସଦା ହୋଇ ବିମୋହିତ ॥
ଅଭୟ ପାଦକମଳ ବାସନାକୁ ଘେନି ।
ଜାଗ୍ରତରେ ନିତ୍ୟ ସଦା ନାସାପୁଟ ବେନି ॥
ସୁଗନ୍ଧ ଦୁର୍ଗନ୍ଧ ସଙ୍ଗ କରି ନିବାରଣ ।
ବ୍ରହ୍ମ ଶରଣ ପଦରେ ରହୁ ଜାଗରଣ ॥
ତ୍ୱଗିନ୍ଦ୍ରିୟ ଆବୋରିଛି ସର୍ବାଙ୍ଗ ଶରୀର ।
ତହିଁର ଯେ ଅଧିଦେବ ଅଟନ୍ତି ସମୀର ॥
କୋମଳ ଶଯ୍ୟା ଭୂଷଣେ ହୋଇ ଅକାଙ୍କ୍ଷିତ ।
ଶୀତଳସ୍ପର୍ଶ ଗୁଣେ ନିତ୍ୟେ ସଦା ଆନନ୍ଦିତ ॥
ଶିନ୍ନୟ ଅଭୟ ପଦ ଦର୍ଶନ କାଳରେ ।
ପ୍ରଣିପାତ ସ୍ଥାନୁଁ ରେଣୁ ପାଇବ ସତ୍ୱରେ ॥
ଅଙ୍ଗ ପ୍ରତ୍ୟଙ୍ଗ ଶରୀରେ କରିବ ଲେପନ ।
ମସ୍ତକାଗ୍ରେ ନିରନ୍ତର କରିବ ଧାରଣ ॥
ବାୟୁର ଭକତି କିସ୍ତୁ ଅଟେ ଏହି ମତ ।
ଅଭୟ ପାଦ ଭଜନେ ହୋଇଥିବ ରତ ॥
ଇନ୍ଦ୍ର କରପଦ ଯୋଡ଼ି କରିବ ପ୍ରାର୍ଥନା ।
ସକଳ ଇନ୍ଦ୍ରିୟ ଦେହ କରିବ ମାର୍ଜନା ॥

ଅନାତ୍ୟ ଦେହର କର୍ମ କରିଣ ବର୍ଜ୍ଜନ ।
ଇଷ୍ଟଦେବ ଉଦ୍ଦେଶ୍ୟରେ କରିବ ଯତନ ।୭୦।
ବ୍ରହ୍ମ ଶରଣରେ ନିତ୍ୟ ରହି ଅନୁରକ୍ତ ।
ଦେବେନ୍ଦ୍ର କରିବ ତୁଷ୍ଟ ହୋଇ ନିରାସକ୍ତ ॥
ପାଦ ମଧ୍ୟେ ଉପେନ୍ଦ୍ର ଅଛନ୍ତି ବିଦ୍ୟମାନ ।
ଗମନ କରଇ ପାଦ କରି ସଞ୍ଚାଳନ ॥
ସ୍ଥୂଳ ଶରୀରର ଭାର ବହେ ନିରନ୍ତର ।
କାମ୍ୟ କର୍ମ ସାଧନରେ ଅଟଇ ତତ୍ପର ॥
ନିଷ୍କାମ ଭକତ କର୍ମ ଆତ୍ମା ଉଦ୍ଦେଶ୍ୟରେ ।
ପାଦ ଅଧିଦେବ ବିଷ୍ଣୁ ରହୁ ସପତ୍ନରେ ॥
ଗୁହ୍ୟମଣ୍ଡଳ ଅଟେ ବୋଲି ଛନ୍ତି ମୃତ୍ୟୁଦେବ ।
ଅପାନ ଉତ୍ସର୍ଗ କାର୍ଯ୍ୟ କରଇ ସେ ସର୍ବ ॥
ଅପାନ ଉତ୍ଥିତ ହେବ ପ୍ରାଣ ସଙ୍ଗତକୁ ।
ଅଭୟ ପାଦ ଭଜନ ପଦ ସ୍ମରିବାକୁ ॥
ଉପସ୍ଥ ପୀଠରେ ଦେବ ଅଟେ ପ୍ରଜାପତି ।
ଆନନ୍ଦ ଉପଭୋଗରେ ନାହିଁ ଉପରତି ॥
ଚିରନ୍ତନ ଶାନ୍ତି ପଦ ଭଜନ ଆଳୟେ ।
ଅକାମରେ ରହୁ କେବେଁ ନ ପଡ଼ୁ ପ୍ରଳୟେ ॥
ଚନ୍ଦ୍ର ଚତୁର୍ମୁଖ ଯେହୁ ଶଙ୍କର ଅଚ୍ୟୁତ ।
ଅନ୍ତଃକରଣରେ ସେହୁ ଅଟନ୍ତି ବିଖ୍ୟାତ ॥
କଳ୍ପନା ନିଷ୍ଠୟ କରି ଚିନ୍ମୟ ପାଦକୁ ।
ମମତାରେ କରି ଚିନ୍ତା ପରମ ବ୍ରହ୍ମଙ୍କୁ ।୮୦।
ବିଷୟ ବୃତ୍ତିରେ ନ କରାଇ ଅଭିମୁଖ ।
ନିର୍ବିଷୟ ଭାବନାରେ ଅନୁବ୍ରତେ ରଖ ॥

ଷଟ୍‌ଚକ୍ର ଅଧିପତି ଦେବଗଣ ଯେତେ ।
ଅଭୟ ପାଦ ସ୍ମରଣ କରିବେ ସୁଖରେ ॥
ଶରୀରଯନ୍ତ୍ରରେ ଯେତେ ଯନ୍ତ୍ରିତ ଅଛନ୍ତି ।
ସ୍ୱ-ସ୍ୱ ବିଷୟ କାର୍ଯ୍ୟରେ ସମସ୍ତେ ଖଟନ୍ତି ॥
ପଞ୍ଚଭୂତରେ ଗଠିତ ଅନିତ୍ୟ ଶରୀର ।
ଆତ୍ମାର ବିଜତ୍ୱ ଭୂମି ଅଟେ ସେ ମଧୁର ॥
ସର୍ବତତ୍ତ୍ୱ ଅଧିପତି ଦେବଗଣ ଯେତେ ।
ଆତ୍ମାଚୈତନ୍ୟରେ ପ୍ରକାଶିତ ସର୍ବଭୂତେ ॥
ବ୍ରହ୍ମଶରଣରେ ଆତ୍ମା ହୋଇଲେ ତତ୍ପର ।
ସର୍ବଦେବ ଶରଣ ପଶିବେ ସେ ପୟର ॥
ଇନ୍ଦ୍ରିୟଗଣରୁ ଏକ ହେଲେ ବିଚଳିତ ।
ପ୍ରଜ୍ଞା ଭକ୍ତି ବିନଷ୍ଟ ଯେ ହୁଅଇ ନିଶ୍ଚିତ ॥
ସର୍ବତୋଭାବେ ଶରଣ ପଶିଲେ ବ୍ରହ୍ମରେ ।
ଆତ୍ମାର ସଦ୍‌ଗତି ପ୍ରାପ୍ତି ହୁଅଇ ସତ୍ୱରେ ॥
ସୁନିର୍ମଳ ସୁନିଶ୍ଚଳ ସ୍ଥାନେ ଉଭା ହୋଇ ।
ପ୍ରାତଃ ବ୍ରାହ୍ମ ମୁହୂର୍ତ୍ତରେ ପୂର୍ବଦିଗେ ଚାହିଁ ॥
ଶିରେ କରପଦ୍ମ ଯୋଡ଼ି ଊର୍ଦ୍ଧ୍ୱେ ଦୃଷ୍ଟି କରି ।
ଅଭୟ ପାଦ ମହିମା ହୃଦଗତେ ସ୍ମରି ।  ୧୦ ।
ସୁପ୍ରସନ୍ନ ବଦନରେ କରିବ ବଖାଣ ।
ମହିମା ଅଲେଖ ବ୍ରହ୍ମ ଧେନ ମୋ ଜଣାଣ ॥
ତବ ଅଭୟ ପଦ୍ମରେ ପଶୁଛୁ ଶରଣ ।
ଭବଭୟ ବନ୍ଧନରୁ କର ହେ ମୋଚନ ॥
ତବ ଆଭାରେ ପ୍ରକାଶ ହୋଇଛୁ ଜୀବନ ।
ସେହି ଆତ୍ମା ହେଉ ତବ ପାଦର ଅଧୀନ ॥

ଇନ୍ଦ୍ରିୟ ପ୍ରବୃତ୍ତି ଗୁଣେ ନୋହୁ ବିମୋହିତ ।
ଅଭୟ ପାଦପଦ୍ମରେ ରହୁ ସଦା ଚିତ୍ତ ॥
ତବ ଅନୁରକ୍ତ ହୋଇ ରହୁ ମନ ପ୍ରାଣ ।
ଦେହ ମଧ୍ୟେ ଯେତେ ଛନ୍ତି ସର୍ବେନ୍ଦ୍ରିୟ ଗଣ ॥
ସର୍ବ ଦେବ ତବ ପଦେ କରନ୍ତି ପ୍ରଣାମ ।
ତବ ମହିମା ଜ୍ଞାନରେ ହୋଇଣ ଅକ୍ଷମ ॥
ହେ ଅଲେଖ ବ୍ରହ୍ମ ଅଖଣ୍ଡିତ ଅଣାକାର ।
ହେ ଅକ୍ଷୟ ବିଭୁ ଅକଳ୍ପିତ ନିର୍ବିକାର ॥
ଅରୂପ ଅଦୃଶ୍ୟ ଅନାହତ ଯେ ଅଦ୍ୱୈତ ।
ଅବ୍ୟକ୍ତ ସନାତନ ନିର୍ଗୁଣ ଅଚ୍ୟୁତ ॥
ହେ ପ୍ରଭୁ ମହିମାମେରୁ ଅନାମ ଅଦେହ ।
ନିତ୍ୟ ଶୁଦ୍ଧ ନିରଞ୍ଜନ ଅମୃତ ଅଭୟ ॥
ଅଶବ୍ଦ ଅସ୍ପର୍ଶ ଅନିର୍ଦ୍ଦେଶ ଅଲକ୍ଷିତ ।
ଅନାଦି ଅନନ୍ତ ତ୍ରିକାଳରେ ଅସମ୍ଭୂତ ।୧୦୦।
ହେ ବ୍ରହ୍ମ ସଚ୍ଚିଦାନନ୍ଦ ଅବାଂୟ ଅମୂର୍ତ୍ତି ।
ନିରାଲମ୍ବ ସର୍ବାଶ୍ରୟ ପଦର ସଂସ୍ଥିତ ॥
ଅବିନାଶୀ ପୂର୍ଣ୍ଣାନନ୍ଦ ପୁଣ କରୁଣାମୟ ।
ଉପାଧି ଅନ୍ତରେ ହୋଇଅଛ ଜ୍ୟୋତିର୍ମୟ ॥
ତବ ପାଦ ପୂଜିଅଛୁ ସକଳ ସ୍ଥାନରେ ।
ଚିନ୍ମୟ ସ୍ୱରୂପ ଜ୍ୟୋତି ପ୍ରକାଶେ ହୃଦରେ ॥
ସର୍ବ ଅନ୍ତର୍ଯ୍ୟାମୀନାଥ ଦୟାକୁ ସାଗର ।
ତବ ଅଧୀନ ଅମ୍ଭଙ୍କୁ କୃପାରେ ଉଦ୍ଧର ॥
ତବ ଅଭୟ ପାଦରେ ଶରଣ ମୋହର ।
ଶରଣ ରକ୍ଷା କରନ୍ତୁ ଶରଣସୋଦର ॥

ସଚ୍ଚିଦାନନ୍ଦ ସଦାନନ୍ଦ ଗୁରୁ ପିତା ମାତା ।
ତବ ବିନୁ ଏ ସଂସାରେ କିଏ ମୋକ୍ଷଦାତା ॥
ସର୍ବ ମୋକ୍ଷର କାରଣ କାରଣ ନିଦାନ ।
ସର୍ବେଶ୍ୱର ମହାପ୍ରଭୁ ଅଟନ୍ତି ଆପଣ ॥
ଉପାଧିବିମୁକ୍ତ ଅଦ୍ୱ ଅନ୍ତରୁ ବହିନ ।
ବିଜ୍ଞାନଘନ ସ୍ୱରୂପ ସର୍ବଜ୍ଞ ସମ୍ପନ୍ନ ॥
ହେ ପ୍ରଭୁ କ୍ଷମାସାଗର ! କ୍ଷମା କର ଦୋଷ ।
ଅଭୟ ପାଦ ବର୍ଣ୍ଣନ କରି ନୁହେ ଶେଷ ॥
ସେହି ପାଦ ଜ୍ଞାନ ଭକ୍ତି କରନ୍ତୁ ପ୍ରଦାନ ।
ତବ ଦାସ ତବ ପାଦେ କରେ ନିବେଦନ ।୧୧୦।
ଅହେ ମହାପ୍ରଭୁ ନିର୍ବିକଳ୍ପ ନିର୍ବିକାର !
ଏ ମନ କଳ୍ପନା କରୁ ତବ ଶ୍ରୀପୟର ॥
ଅନ୍ୟ ପ୍ରପଞ୍ଚ କଳ୍ପନା ନ ରହୁ ମନରେ ।
ସର୍ବଦା ଭିବିତ ହେଉ ତୁମ୍ଭର ନାମରେ ॥
ଅହେ ପରଂବ୍ରହ୍ମ ସୁବିବେକ ବୁଦ୍ଧିଦାତା ।
ଅଜ୍ଞାନ ମାୟା ତମିର ଭଞ୍ଜନ କରତା ॥
ତୁମ୍ଭଙ୍କୁ ନିଶ୍ଚୟ କରି ବହୁ ଏହୁ ବୁଦ୍ଧି ।
ଅନିତ୍ୟ ସଂସାରେ ଯେ ନ ରହୁ ନିରବଧି ॥
ନିତ୍ୟ ନିରଞ୍ଜନ ବ୍ରହ୍ମ ନିର୍ମମ ଅଦ୍ୱୈତ ।
ନିତ୍ୟ ଶୁଦ୍ଧଭାବେ ରହିଅଛୁ ଅବସ୍ଥିତ ॥
ତବ ଠାବେ ମମତା ଯେ ରହୁ ନିରନ୍ତରେ ।
ସଂସାର ମମତା ନାଶଯାଉ ଦୂରନ୍ତରେ ॥
ହେ ଚିନ୍ମୟ ଶଦାକାଶ ଗୁରୁ ବ୍ରହ୍ମରୂପୀ ।
ଅନ୍ତର ବାହ୍ୟରେ ହୋଇଅଛୁ ସର୍ବବ୍ୟାପୀ ॥

ଶତ ତୁମ୍ଭଙ୍କୁ ସର୍ବଦା କରୁ ଯେ ଶନ୍ତନ ।
ଦୁଶ୍ଚିନ୍ତା ହୃଦରୁ ହୋଇଯାଉ ବିନାଶନ ॥
ଅନ୍ତର୍ଯାମୀ ହୋଇ ଅନ୍ତଃକରଣେ ରହିଛ ।
ଅନ୍ତରିନ୍ଦ୍ରିୟଙ୍କୁ କର ତବ ପାଦପୋଛ ॥
ନିଃଶବ୍ଦ ଅବ୍ୟକ୍ତ ବ୍ରହ୍ମ ହେ ଗୁରୁ ଅନାଦି ।
ଶବ୍ଦ ମାୟାଜାଲ କେବେଁ ନ ପାରୁଛି ଭେଦି ।୧୨୦।
ସ୍ୱୟଂ ସୁକରୁଣା ବହି କରନ୍ତୁ ନିସ୍ତାର ।
ଜନ୍ମ ଜନ୍ମାନ୍ତରେ ଭକ୍ତି ହେଉ ଯେ ସୁସ୍ଥିର ॥
ବ୍ରହ୍ମ ନାମାମୃତ କର୍ଣ୍ଣ କରୁ ଯେ ଶ୍ରବଣ ।
ନିରନ୍ତରେ ଖଟିଥାଉ ତବ ଶ୍ରୀଚରଣ ॥
ପ୍ରପଞ୍ଚ ଉନ୍ମାଦ କେବେଁ ନ ଭେଦୁ ଶ୍ରବଣେ ।
ସୁଦୟାରେ ଏ ବ୍ୟବସ୍ଥା କରନ୍ତୁ ଅଟଣେ ॥
ହେ ଅଲେଖ ଅବଧୂତ ଅବ୍ୟୟ ମୂରତି !
ତ୍ରିଭୁବନ ବ୍ୟାପିଅଛି ତୁମ୍ଭର ବିଭୂତି ॥
ତବ ଶ୍ରୀଚରଣରେଣୁ ଏ କ୍ଷୁଦ୍ର ଅଙ୍ଗରେ ।
ବିଭୂଷିତ ହେଉଥାଉ ଦର୍ଶନକାଳରେ ॥
ସୁଶଯ୍ୟା ଭୂଷଣରେ ଯେ ନ ହେଉ ଆକାଂକ୍ଷା ।
ସୁକରୁଣା କର ପ୍ରଭୁ ଏହା ମୋର ବାଞ୍ଛା ॥
ସଚ୍ଚିଦାନନ୍ଦ ସ୍ୱରୂପେ ହୋଇଛ ଉଦିତ ।
ଉପାଧି ବସ୍ତୁରେ କେବେଁ ନୁହ ଯେ କଳ୍ପିତ ॥
ଊର୍ଦ୍ଧ୍ୱ ଶୂନ୍ୟ ଚିନ୍ମୟକୁ ଚକ୍ଷୁ କରୁ ଧ୍ୟାନ ।
ପ୍ରପଞ୍ଚ ରୂପରେ ଚକ୍ଷୁ ନ ହେଉ ମିଳନ ॥
ଅହେ ତୁମ୍ଭେ ପୂର୍ଣ୍ଣାନନ୍ଦ ପୂର୍ଣ୍ଣ ଏକରସ ।
ତ୍ରିକାଳ ମଧ୍ୟେ କଦାପି ନୁହ ଯେ ବିନାଶ ॥

ଏ ରସନା ପାନ କରୁ ତବ ପାଦାମୃତ ।
ବୃଥା ଲାଲସାରେ ନୋହୁ କେବେ ଲାଳାୟିତ ।୧୩୦।
ସର୍ବ ବାସନାରୁ ଶୂନ୍ୟ ତୁମ୍ଭେ ପରମେଶ ।
ସର୍ବ ପ୍ରାଣୀଙ୍କର ଅଟ ପରମ ପୁରୁଷ ।।
ମନ ପ୍ରାଣ ଯୁକ୍ତ ହୋଇ ଘ୍ରାଣେନ୍ଦ୍ରିୟ ଦେଶେ ।
ଅଜପା ଭଜନ ଘୋଷୁଥାନ୍ତୁ ଅନିମେଷେ ।।
ବାହ୍ୟ ସୁଗନ୍ଧ ଦୁର୍ଗନ୍ଧ ହେଉ ପରିହାର ।
ଏହି ସୁଦୟା କରନ୍ତୁ ମହିମାସାଗର ।।
ଅବାଚ୍ୟ ଅଗୋଚର ପ୍ରଭୁ ଅସ୍ମା ଶିରୋମଣି ।
ବାକ୍ୟ ଦ୍ୱାରା ତବ ନାମ କେ ପାରିବ ଭଣି ।।
ତବ ଅଗାଧ ମହିମା ନ ସରେ ବର୍ଣ୍ଣନ ।
ବାକ୍ୟ ସଦା କରୁଥାଉ ତୁମ୍ଭଙ୍କୁ ପ୍ରାର୍ଥନ ।।
ଶରଣ ଶରଣ ପଦେ ହୁଅ ପରିତୋଷ ।
ପୂର୍ବକୃତବାକ୍ୟଦୋଷକୁ କର ହେ ବିନାଶ ।।
ଅନ୍ୟ ସ୍ମରଣ ଭଜନ ଏ ମନୋବାକ୍ୟରେ ।
ପ୍ରକାଶ ନ ହେଉ ପ୍ରଭୋ । ତବ ସୁଦୟାରେ ।।
ବିଶୁଦ୍ଧ ବିମୁକ୍ତ ବ୍ରହ୍ମ ନାମାମୃତ ମାଳ ।
କଣ୍ଠରେ ଭୂଷଣ ହୋଇଥାଉ ସଦାକାଳ ।।
ହୃଦପଦ୍ମେ ଦିବ୍ୟ ଜ୍ୟୋତି କରୁ ସୁପ୍ରକାଶ ।
ବିମଳ ମଣ୍ଡଳରେ ହେଉ ସତ୍ୟର ବିକାଶ ।।
ଅହେ ମହାବ୍ରହ୍ମ ସର୍ବ ଜଗତ ଧାରଣ ।
ସୁକୃପାରେ ଏ ଅସ୍ମାକୁ କର ପରିତ୍ରାଣ ।୧୪୦।
ସଦା କରପଦ ଯୋଡ଼ି କରୁଥାଉ ସ୍ତୁତି ।
ସ୍ପର୍ଶ ନ କରୁ ଅସାର ସଂସାର ପ୍ରବୃତ୍ତି ।।

ଅଭୟ ପାଦ ଦର୍ଶନ ଶରଣକାଳରେ ।
ପବାଗନ ବେଳ ସନ୍ଧ୍ୟା ବ୍ରାହ୍ମ ମୁହୂର୍ତ୍ତରେ ॥
ଆପାଦମସ୍ତକ ସର୍ବେ ହୋଇ ସୁସଜ୍ଜିତ ।
ଉଭା ହୋଇ ତବ ପାଦେ ହୋନ୍ତୁ ପ୍ରଣମିତ
ଆଜୀବନ ତବ ପାଦେ ପଶୁଛୁ ଶରଣ ।
ଏ ଭକ୍ତ ପ୍ରତଙ୍କୁ ରକ୍ଷା କରନ୍ତୁ ଆପଣ ॥
ଅନନ୍ତ କୋଟି ଐଶ୍ୱର୍ଯ୍ୟ ଅନନ୍ତ ଜଗତ ।
ତବ ମହିମାରେ ହେଉଅଛୁ ଅତପାତ ॥
ସିଦ୍ଧ ବ୍ରହ୍ମବାଦ ସାଧୁବୃନ୍ଦ ନିରନ୍ତରେ ।
ଶରଣ ପଶନ୍ତି ସର୍ବେ ତବ ଶ୍ରୀପଦ୍ମରେ ॥
ହେ ଅଲେଖ ପରମାତ୍ମା ବ୍ରହ୍ମ ନିରଞ୍ଜନ ।
ତବ ମହିମାକୁ କେହି ନ ପାରେଁ ବର୍ଣ୍ଣନ ॥
ସାଷ୍ଟାଙ୍ଗେ ଶରଣ ଗଲି ଅଭୟ ପାଦରେ ।
ଶରଣ ରକ୍ଷା କରନ୍ତୁ ଶରଣ ପଞ୍ଜରେ ॥
ମହିମା ଅଲେଖ ବ୍ରହ୍ମେ ପଶୁଛୁ ଶରଣ ।
ଶରଣାଗତଙ୍କୁ ସଦା କରନ୍ତୁ କାରଣ ॥
ହେ ପ୍ରଭୁ ! ମୁହିଁ ତୁମ୍ଭର ଅଟଇ କଙ୍କର ।
ତୁମ୍ଭେ ମୋ ହୃଦପଦ୍ମରେ କରୁଛ ବିହାର । ୧୫୦ ।
'ଅହଂ ତ୍ୱଂ' ଏ ବେଳପଦ ଏକକ ସଂଯୁତ ।
ବ୍ରହ୍ମମୟ ହୋଇ ଅନ୍ୟ ନ ହୋଇ ବିଭକ୍ତ ॥
ଏହିରୂପ ବାରମ୍ବାର କରିବ ଜଣାଣ ।
କରପଦ ହୃଦେ ଯୋଡ଼ି କରିବ ପ୍ରଣାମ ॥
ବେଳି କରପଦ ଛନ୍ଦେ ବେଳି ଭୂଜମୂଳେ ।
ଭୁମିରେ ମସ୍ତକ ନାସା ଲାଗିବ ତତ୍କାଳେ ॥

ଉଦର ଲାଗିବ ବେନି ଜାନୁର ମଧ୍ୟରେ ।
ବେନି ଅଣ୍ଟୁ ବେନିପାଦ ଲାଗିବ ଭୂମିରେ ॥
ପୁନଃ କରପଦ ଯୋଡ଼ି ଶିର ଊର୍ଦ୍ଧ୍ୱ ଦେଶେ ।
ଶରୀର ସରଳ କରି ପ୍ରଣମି ବିଶେଷେ ॥
ଯୋଡ଼ହସ୍ତ ପୃଥକ କରିଣ ସେ ସ୍ଥାନରୁ ।
ମସ୍ତକ ଊର୍ଦ୍ଧ୍ୱେ ଯୋଡ଼ିବ ସମରି ଶ୍ରୀଗୁରୁ ॥
କପୋଳ ନାସା ହୃଦୟ କର ଜାନୁ ପାଦ ।
ଭୂମିଲଗ୍ନ କରି ସ୍ଥାପି ନ କରିଣ ଭେଦ ॥
ପୁନଃ କରପଦ ହୃଦଦେଶେ ଅନୟନ ।
ଶିର ପ୍ରଥମ ସ୍ଥାନକୁ ଆଣି ସଯତନ ॥
ବାମଜାନୁମୂଳେ ଛନ୍ଦ ଦକ୍ଷପାଦ ଊର୍ଦ୍ଧ୍ୱ ।
ଦକ୍ଷଜାନୁ ମୂଳେ ଛନ୍ଦ ବାମ ପାଦ ଊର୍ଦ୍ଧ୍ୱ ॥
ବାର ବାର ଦ୍ୱିତୀୟ ସ୍ଥାନରେ ଶିର ସ୍ଥାପି ।
ପ୍ରଥମ ସ୍ଥାନକୁ ଶିର ନେବ ନାମ ଜପି ।୧୬୦।
ପୂର୍ବୋକ୍ତ ବିଧାନେ ଶିର ମହୀପରେ ଟାଳି ।
ସେହିଁସ୍ଥାନୁ ଗୁରୁପାଦରେଣୁ ଯତ୍ନେ ତୋଳି ॥
ମୁଖେ ପାଇ ସର୍ବାଙ୍ଗରେ କରିବ ଲେପନ ।
ପୂର୍ବବତ ଉଭା ହୋଇ କରିବ ସ୍ମରଣ ॥
ଏହି ରୂପ ସପ୍ତବାର ସାଷ୍ଟାଙ୍ଗେ ଶରଣ ।
ପରମବ୍ରହ୍ମରେ ପ୍ରୀତି କରିବ ବର୍ଦ୍ଧନ ॥
ପ୍ରେମ ପୁଲକ ବଦନେ ଉଲ୍ଲସିତ ହୋଇ ।
ମହିମା ଅଲେଖବ୍ରହ୍ମ ଉଚ୍ଚସ୍ୱରେ ଗାଇ ॥
କରେ ନୟୁ ତାଳଦେଇ ପଛକୁ ଘୁଞ୍ଚିବ ।
ଦର୍ଶନ ଭୂମିରୁ ଚାହିଁ ଅଦୃଶା କରିବ ॥

ସିଦ୍ଧ ଗୁରୁଜନେ କର ଯତନେ ପ୍ରଣାମ ।
ସଯତନେ ସୁଖାସନେ ଜଣାଣ ନିୟମ ॥
ପ୍ରଭୁ ନାମ ସ୍ମର ସ୍ତୁତି କରିବ ପଠନ ।
ମନ ସ୍ପନ୍ଦରେ କରିବ ଅଜପା ଭଜନ ॥
ପ୍ରାଣବାୟୁ ମଧ୍ୟେ ଗତି କରଇ ସୋହଂସ ।
ବାହ୍ୟ ଅଭ୍ୟନ୍ତରେ ହୁଏ ଶ୍ୱାସ ଯେ ପ୍ରଶ୍ୱାସ ॥
ଷଠଶତ ଏକବିଂଶ ସହସ୍ର ସଂଖ୍ୟକ ।
ଅହରହଃ ଜପ ହୁଏ ନ ସ୍ମର ତଦେକ ॥
ସେହି ଅଜପା ଜପକୁ ଅଭୟ ପାଦରେ ।
ଏକତ୍ର କରିବ ନେଇ ସଦ୍‌ଗୁରୁ ବାକ୍ୟରେ ।୧୬୦।
ଷଠଚକ୍ର ଅଧିପତି ଯେତେ ଛନ୍ତି ଦେବ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ଯେ ଈଶାନ ଆଦି ଶିବ ॥
ସଦାଶିବ ସହ ସର୍ବେ ଅଜପା ଭଜନେ ।
ପ୍ରାଣକୁ ଐକ୍ୟ କରିବେ ବ୍ରହ୍ମ ନିରଞ୍ଜନେ ॥
ସହସ୍ର ଦଳ ପଦ୍ମରେ ମନ ପ୍ରାଣ ଭରି ।
ହଂସ-ସୋହଂ-ସୋହଂ-ହଂସ ଅଜପାରେ ସ୍ମରି ॥
ଅଭୟ ପାଦରେ ସଦା କରିଲେ ପ୍ରଣାମ ।
ଅଜ୍ଞାର ନିଶ୍ଚୟ ହୁଏ ବନ୍ଧନ ମୋଚନ ॥
ଅନାହତ ଧ୍ୱନି ଶବ୍ଦ ଅଜପା ଭଜନେ ।
ମିଶ୍ରିତ କର ଭଜିବ ଅତହିଁ ଯତନେ ॥
ଊର୍ଦ୍ଧ୍ୱ ଦେଶରୁ ହକାର ପରମ ଆସଇ ।
ସକାର ଜୀବ ଅନ୍ତରେ ପ୍ରବେଶ ହୁଅଇ ॥
ଶରଣ ପଦରେ ଆତ୍ମା ହୋଇଲେ ନିଶ୍ଚଳ ।
ଜୀବ ବ୍ରହ୍ମପଦେ ରହେ ନ ହୋଇ ବ୍ୟାକୁଳ ॥

ସୂର୍ଯ୍ୟଅସ୍ତ ମୁହୂର୍ତ୍ତିରେ ପଶ୍ଚିମାଭିମୁଖେ ।
ତଦ୍ଗତ ହୋଇ ଜଣାଣ କରିବ ଆତ୍ମା ସୁଖେ ॥
ପୂର୍ବବିଧି କ୍ରମମତେ କରିବ ଦର୍ଶନ ।
ପଞ୍ଚବାର ସାଷ୍ଟାଙ୍ଗରେ ଶରଣ ପ୍ରପନ୍ନ ॥
ବେନି ସନ୍ଧ୍ୟା ମଧ୍ୟେ ଏକ ପ୍ରଭୁପାଦେ ଭକ୍ତି ।
ଆଜୀବନ ପରିଯନ୍ତେ କରୁଥିବ ନିତି ॥
ପ୍ରଣବସ୍ୱରୂପ ଶରୀରରେ ଆତ୍ମା ଥାଇ ।
ବ୍ରହ୍ମକୁ ଲକ୍ଷ୍ୟ କରିବ ଅପ୍ରମତ୍ତ ହୋଇ ॥
ଇନ୍ଦ୍ରିୟ ପ୍ରବୃତ୍ତି ସର୍ବ ଧର୍ମ ତ୍ୟାଗ କରି ।
କାୟ ମନୋବାକ୍ୟେ ସଦା ପ୍ରଭୁପାଦ ସ୍ମରି ॥
ଆତ୍ମା ମଧ୍ୟେ ପରମାତ୍ମା କରିବ ସନ୍ଧାନ ।
ସେହି ଅଭୟ ପାଦକୁ କରିବ ବନ୍ଦନ ॥
ଅଭୟ ପାଦରେ ଭକ୍ତି କଲେ ଜୀବନ୍ତରେ ।
ଅବ୍ୟୟ ପଦ ପ୍ରାପତ ହେବ ଦେହାନ୍ତରେ ॥
ଭକ୍ତି-ଜ୍ଞାନଯୋଗ ସର୍ବ ଯୋଗଠାରୁ ଶ୍ରେଷ୍ଠ ।
କୈବଲ୍ୟ ମୁକ୍ତି ଦେଇଣ ନାଶେ ସର୍ବ କଷ୍ଟ ॥
ସେହି ବିଶୁଦ୍ଧ ଭକତି କର ସୁଜ୍ଞ ନର ।
ପ୍ରଭୁଙ୍କ କୃପାରେ ନିଷ୍ଟେ ଭବୁଁ ହେବ ପାର ॥
ଯେଉଁମାନେ ଶରୀରକୁ କରିଣ ଯତନ ।
ମାଲ୍ୟ ଚନ୍ଦନ ଅଙ୍ଗରେ କରନ୍ତି ମଣ୍ଡନ ॥
ନାନା ବିଳାସ ବ୍ୟସନେ ଥାନ୍ତି ଅବିରତ ।
ଇନ୍ଦ୍ରିୟଗଣ ଯାହାଙ୍କ ସଦା ପ୍ରକୁପିତ ॥
ସର୍ବଦା ନିଜ ଦେହକୁ କରନ୍ତି ଆଦର ।
ନିତ୍ୟାନିତ୍ୟ ପଦାର୍ଥକୁ ନ କରି ବିଚାର ॥

ନାନା ଅଳଙ୍କାର ଅଙ୍ଗେ ବିଭୂଷିତ ହୋନ୍ତି ।
ମାୟାସ୍ୱରୂପ ରୂପକୁ ରହିଥାନ୍ତି ଶାନ୍ତି ॥
ସେମାନେ ବ୍ରହ୍ମେ ଭକତି କରି ନ ପାରନ୍ତି ।
ଜନ୍ମାନ୍ତରେ ସେମାନଙ୍କୁ ନ ମିଳେ ସଦ୍ଗତି ॥
କାୟ ମନୋବାକ୍ୟେ ଯେହୁ କରି ଭଜନ ଭଜନ ।
ବେଦାମ୍ନାରେ ପରଂବ୍ରହ୍ମେ ପଶଇ ଶରଣ ॥
ପୂର୍ଣ୍ଣାଙ୍ଗ ଭକତି କେବେ ନୁହଇ ତାହାର ।
ପୂର୍ଣ୍ଣାନନ୍ଦ ପଦେ ସେହୁ ନୁହଇ ସୁସ୍ଥିର ॥
ସ୍ୱଳ୍ପ ଜ୍ଞାନୀ ଭକ୍ତ ସ୍ୱଳ୍ପାନନ୍ଦରେ ରହଇ ।
କୈବଲ୍ୟ ପଦ ପ୍ରାପତ କେବେଁ ନ ହୁଅଇ ॥
ବାଳ ଯୁବା ବୃଦ୍ଧ ନର ନାରୀ ଯେ ବା ଜନ ।
ଯାହାର ହୃଦରେ ଉଦେ ହୁଅଇ ସଦ୍‌ଜ୍ଞାନ ॥
ପ୍ରବୁଦ୍ଧ ଗୁରୁ ବେଦାନ୍ତ ବାକ୍ୟରେ ବିଶ୍ୱାସ ।
ଶ୍ରଦ୍ଧା ସହିତରେ ଭକ୍ତି କରଇ ଅଶେଷ ॥
ଏକ ଚିଦାନନ୍ଦ ବ୍ରହ୍ମରେ ପଶଇ ଶରଣ ।
ଦେହାନ୍ତେ ପ୍ରାପତ ହୁଏ ବ୍ରହ୍ମ ନିର୍ବାଣ ॥
ଇହ ପୂର୍ବଜନ୍ମ କୃତ ସମସ୍ତ ପାପରୁ ।
ଉଦ୍ଧାର କରି ନିଅନ୍ତି ଅଲେଖ ଶ୍ରୀଗୁରୁ ॥
ଶ୍ରଦ୍ଧା ଭକତି ସହିତ ନିଷ୍କାମ ମନରେ ।
ପିଣ୍ଡ ପ୍ରାଣକୁ ଅର୍ପଣ କରିବ ବ୍ରହ୍ମରେ ॥
ବ୍ରହ୍ମ ଭକତିରେ ନାହିଁ ଜାତିତ୍ୱ କଳ୍ପନା ।
ଉଚ୍ଚ ନୀଚ ଭେଦ ଗର୍ବ ନ କର ଭାବନା । ୨୦୦ ।
ସର୍ବ ଜାତି ଦୋଷ ବିନାଶଇ ନିଷ୍ଠା ଭକ୍ତି ।
ଅବ୍ୟଭିଚାର ଭାବରେ ବ୍ରହ୍ମେ କର ପ୍ରୀତି ॥

ଅହେତୁକ ଜ୍ଞାନ ହୃଦେ ହୁଏ ଉଦ୍ଦୀପନ ।
ବିଷୟ ଦୋଷ ବିନଷ୍ଟ ହୁଅଇ ତତକ୍ଷଣ ॥
ଅଭୟ ପାଦରେ ଭକ୍ତି କରିଲେ ନିଷ୍ଠିତ ।
ଯବପୃବ ବ୍ରହ୍ମପଦ ହୁଅଇ ପ୍ରାପତ ॥
ଶନ୍ନୟ ଅଲେଖ ବ୍ରହ୍ମେ ପଶୁଛନ୍ତି ଶରଣ ।
ଶରଣ ମହିମା ବ୍ୟାଖ୍ୟା ନ ସରେ ବର୍ଣ୍ଣନ । ୨୦୪ ।

ଇତି ଶ୍ରୀମଦ୍ଭିନ୍ନୟ ବ୍ରହ୍ମଗୀତା ବିଶୁଦ୍ଧ ନିଷ୍କାମ
ଅଭୟପାଦ ଭକ୍ତିଯୋଗକଥନେ ଭବଭୟ
ଉଦ୍ଧାରଣେ ସ୍ଵୟଙ୍କ ଜନଶନ୍ତନୋ
ନାମ ଦ୍ୱିତୀୟୋଽଧ୍ୟାୟଃ ।

---

# ତୃତୀୟ ଅଧ୍ୟାୟ

## ବିଶୁଦ୍ଧ ନିଷ୍କାମ କର୍ମଯୋଗ

ବିଶ୍ୱ ସଂସାରରେ ଯେତେ ଜୀବଗଣ ଛନ୍ତି ।
ନିଷ୍କର୍ମଭାବେ କାହାର ନାହିଁ ଅବସ୍ଥିତି ॥
କର୍ମରେ ପ୍ରବର୍ତ୍ତି ସର୍ବେ ଧରନ୍ତି ଜୀବନ ।
ଶୁଭାଶୁଭ ବେଦନ ପଥେ କରନ୍ତି ଗମନ ॥
କର୍ମ ତ୍ୟାଗ କରି ରହି ନୋହେ ଧରଣୀରେ ।
ଇନ୍ଦ୍ରିୟବଳରେ କର୍ମ ହୁଏ ସ୍ୱଇଚ୍ଛାରେ ॥
ନିଷ୍କାମ ଭକ୍ତିଯୋଗ ସାଧକ ଯେ ଜନ ।
ନିଷ୍କାମ କର୍ମରେ ସଦା କରିବ ଯତନ ॥

ଯେଉଁ କର୍ମଫଳେ ହୁଏ କାମନା ଜଡ଼ିତ ।
କାମ୍ୟ କର୍ମ ନାମେ ସେହୁ ଅଟଇ ବିଖ୍ୟାତ ॥
କାମନା ରଖି କାର୍ଯ୍ୟରେ ହେଲେ ପ୍ରବର୍ତ୍ତିତ ।
ସେହିରୂପ କର୍ମଫଳ ହୁଅଇ ପ୍ରାପତ ॥
ନିଷିଦ୍ଧ କର୍ମ କରିଲେ ଫଳାକାଂକ୍ଷା ତେଜି ।
ସେହି କର୍ମଫଳେ ଜୀବ ଅଧୋଗତି ଭୁଞ୍ଜି ॥
ଅସାର ଅନିତ୍ୟ ଦେହ ହୋଇଣ ପ୍ରାପତ ।
ନରକର ଦୁଃଖଭୋଗ କରଇ ନିରତ ॥
ବୈଧ କାମ୍ୟକର୍ମ କଲେ ସ୍ୱର୍ଗଗତି ପାଇ ।
କର୍ମଫଳ କ୍ଷୟ ଅନ୍ତେ ମର୍ତ୍ତ୍ୟକୁ ଫେରଇ ॥
କର୍ମର ବିଧି ବିଧାନ ଗତି ଏହିରୂପ ।
ପ୍ରାଣାନ୍ତ ପର୍ଯ୍ୟନ୍ତ କର୍ମ ଗତି କଟିବ ଧାପ । ୧୦ ।
ଯେରୂପ କର୍ମରେ ପ୍ରାପ୍ତି ହୁଏ ଶାନ୍ତିପଦ ।
ସେହି ନିଷ୍କାମ ବିଶୁଦ୍ଧ କର୍ମକୁ ସମ୍ବାଦ ॥
ଯେଉଁ କର୍ମ ରଜ ତମ ଗୁଣକୁ ବିନାଶେ ।
ବିଶୁଦ୍ଧ ସତ୍ତ୍ୱ ବିଜ୍ଞାନ ହୃଦରେ ପ୍ରକାଶେ ॥
ସେହି ନିଷ୍କାମ କରମ ଅଟେ କରଣୀୟ ।
ଭକ୍ତ ଜନଙ୍କର ସେହୁ ଅଟେ ସୁବିଧେୟ ॥
ନିଷ୍କାମ କର୍ମର ତତ୍ତ୍ୱ କର ନିରୂପଣ ।
କାମ୍ୟ ବିନାଶର ହେତୁ ହେଉଛୁ ବର୍ଣ୍ଣନ ॥
ଅହଂ ମମ ପଦ ଦୁହୁ କରଣ ବର୍ଜନ ।
ବିଷୟ ପଦାର୍ଥମାନ କରିବ ଗ୍ରହଣ ॥
ନିର୍ବିଷୟ ବ୍ରହ୍ମପଦ କରଣ ସ୍ମରଣ ।
ଅନାସକ୍ତ ହୋଇ କର୍ମ କରିବ ଯତନ ॥

ପ୍ରଥମେ କରିବ କର୍ମ ପ୍ରଭୁପାଦେ ଭକ୍ତ ।
ଯେରୂପ କର୍ମକ୍ଷେତ୍ରରେ ନ ରହେ ଅସକ୍ତ ॥
ଶରୀର ରକ୍ଷାର୍ଥେ କର୍ମ କରିବ ତତ୍‌ପରେ ।
ଭୋଜନ ପାନ ପଠନ ଆଦି ବିଷୟରେ ॥
ସର୍ବଜନ ଉପକାର କାରଣ ନିମନ୍ତେ ।
ସ୍ତ୍ରୀ-ପୁତ୍ର ମିତ୍ର କଳତ୍ର ଶତ୍ରୁ ପରିଯନ୍ତେ ॥
ଅନ୍ୟର ଅନିଷ୍ଟ ଚିନ୍ତା କେବେଁ ନ କରିବ ।
ଯଥାର୍ଥ ସମୟେ ଯଥା କାର୍ଯ୍ୟହିଁ କରିବ । ୨୦ ।
ନିଷିଦ୍ଧ ପ୍ରପଞ୍ଚ ନାରକୀୟ କର୍ମ ଯେତେ ।
ଏହାକୁ କେବେଁ କଳ୍ପନା ନ କରିବ ଚିତ୍ତେ ॥
କାମ ଉପଭୋଗେ ଚିନ୍ତା ନ କରିବ ମନ ।
କାମ୍ୟ କର୍ମରେ କଦାଚ ନ ଅର୍ପିବ ଧନ ॥
ସଦାଗୁରୁ ସଦବୃତ୍ତି କର୍ମ ଆଚରିବ ।
ସଜ୍ଜନ ସଙ୍ଗତେ ସେବା ବସତି କରିବ ॥
କାମ କ୍ରୋଧ ଲୋଭଭାବେ ନ ହୋଇବ ବଶ ।
ଖଳ ଦୁର୍ଜନ ସଙ୍ଗରେ ନ କରିବ ବାସ ॥
ପ୍ରଭୁଙ୍କୁ ସୁମରି କର୍ମ ପ୍ରାରମ୍ଭ କରିବ ॥
କର୍ମଫଳରେ ଅସକ୍ତ କଦାଚ ନ ହେବ ।
ସେହି ଫଳକୁ ଅର୍ପିବ ପ୍ରଭୁଙ୍କ ପୟରେ ।
ଅନାସକ୍ତିରେ ରହିବ ବ୍ରହ୍ମ ଆନନ୍ଦରେ ॥
ଇନ୍ଦ୍ରିୟଗଣ କର୍ମରେ ଥାନ୍ତି ପ୍ରବର୍ତ୍ତିତ ।
ଆତ୍ମା ସାକ୍ଷୀରୂପେ ରହି ହୁଏ ସର୍ବଜ୍ଞାତ ॥
ଶରୀରସ୍ୱରୂପ ରଥ ହୋଇଛି ନିର୍ମାଣ ।
ସେହି ରଥ ମଧ୍ୟେ ରଥୀ ସ୍ୱୟଂ ଆତ୍ମା ଜାଣ ॥

ବୁଦ୍ଧି ସାରଥିପଦରେ ଅଛଇ ନିଯୁକ୍ତ ।
କରଣୀୟ କର୍ମ ଯାହା କରଏ ନିଶ୍ଚିତ ॥
ଅଶ୍ୱସ୍ୱରୂପ ଅଟନ୍ତି ସର୍ବେନ୍ଦ୍ରିୟଗଣ ।
ମନସ୍ୱରୂପ ରଜ୍ଜୁରେ ଅଛନ୍ତି ବନ୍ଧନ । ୩୦ ।
ସର୍ବଦା ଇନ୍ଦ୍ରିୟଗଣ ବିଷୟେ ଧାବିତ ।
କର୍ମରେ ନିଯୁକ୍ତ ଥାନ୍ତି ନ ହୋଇ ନିବୃତ୍ତ ॥
ଅଜ୍ଞାନ ଜ୍ଞାନ ବିଷୟ ଜାଣି ନ ପାରନ୍ତି ।
ସ୍ୱସ୍ୱ-ସ୍ୱଭାବ ମତରେ କର୍ମ ଆଚରନ୍ତି ॥
ସେହି କର୍ମଫଳ ସୁଖ ଦୁଃଖ ଜାତ କରେ ।
ସେହି ଫଳକୁ ଭୁଞ୍ଜଇ ଜୀବ ନିରନ୍ତରେ ॥
ସୁଖ ଦୁଃଖ ମିଶ୍ରିତ ସଂସାରଚକ୍ରେ ଭ୍ରମି ।
ଅଣାୟତ୍ତି ଭାବରେ ବୃଥା ହୁଏ ପଥଶ୍ରମୀ ॥
ବିଜ୍ଞାନସଂଯୁତ ହେଲେ ଆତ୍ମା ବୁଦ୍ଧି ମନ ।
ଇନ୍ଦ୍ରିୟାଶ୍ୱଗଣ ସର୍ବେ ହୁଅନ୍ତି ଅଧୀନ ॥
ଆତ୍ମା ବଶବର୍ତ୍ତୀ ହୋଇ ଆତ୍ମା ହିତ କାର୍ଯ୍ୟ ।
ନିରନ୍ତରେ ଖଟିଥା'ନ୍ତି ଆଚରଣ ଶ୍ରେଷ୍ଠ ବୀର୍ଯ୍ୟ ॥
ଦୁର୍ବିଷୟ ବିଷୟକୁ କରନ୍ତି ବର୍ଜ୍ଜନ ।
ବିଶୁଦ୍ଧ ସତ୍ୱ କର୍ମକୁ କରନ୍ତି ଗ୍ରହଣ ॥
ନିଷ୍କାମରେ ସେହି କର୍ମ କରିଲେ ସାଧନ ।
ସଂସାରର ପାପତାପ ହୋଇବ ମୋଚନ ॥
କାୟ ମନ ବାକ୍ୟ ବୁଦ୍ଧି ଇନ୍ଦ୍ରିୟଗଣରେ ।
ଆତ୍ମା ସ୍ୱ-ହିତର କର୍ମ କରିବ ଯତ୍ନରେ ॥
ସକଳ କର୍ମ ଅର୍ପଣ କରିବ ବ୍ରହ୍ମଙ୍କୁ ।
ଉଦାରଭାବରେ ସଦା ରଖିବ ଆତ୍ମାକୁ । ୪୦ ।

ଅନ୍ତରେ ଭାବବ ଏହୁ ଜଗତ ଯାହାର ।
ଯେତେ କର୍ମ ହେଉଅଛି ସମସ୍ତ ତାହାର ॥
ଅଦ୍ଭୁତ ଦୃଶ୍ୟ ଜଗତ ଯେ କଲେ ନିର୍ମାଣ ।
ଯେଉଁ ଅଦ୍ଭୁତ ଶକ୍ତିରେ ଶରୀର ଘଟନ ॥
ସେହି ଶକ୍ତି ପ୍ରଭାବରେ ସର୍ବେନ୍ଦ୍ରିୟ ଗଣ ।
ସ୍ୱସ୍ୱ କର୍ମମାନ କରୁଛନ୍ତି ଅନୁଷ୍ଠାନ ॥
ସେହୁ କର୍ମ କର୍ତ୍ତା ଭୋକ୍ତା ସ୍ୱଅତ୍ମା ନୁହନ୍ତି ।
ଏହିରୂପ ସ୍ୱକର୍ମରେ ହୋଇବ ବରତ ॥
ମୁହିଁ କର୍ତ୍ତା ମୁହିଁ ଭୋକ୍ତା ଯେ ଭାବେ ନିଜକୁ ।
ମୂଢ଼ଭାବେ ବନ୍ଧନରେ ରଖଇ ଅତ୍ମାକୁ ॥
ଅହଂ, 'ମମ ପଦ ହୃଦେ ନ କର ସ୍ମରଣ ।
ଅତ୍ମା ମଧ୍ୟେ ଚିଦାତ୍ମାଙ୍କୁ କରଣ ଚନ୍ତନ ॥
ମଳନ ବାସନା ସଙ୍ଗ କର ପରହାର ।
ବଶୁଦ୍ଧ କର୍ମରେ ସଦା ରହବ ତତ୍ପର ॥
ଧନ ଦାର ସୁତ ବନ୍ଧୁବର୍ଗ ଛନ୍ତି ଯେତେ ।
ଯେତେବା କର୍ମ କରବ ବଗ୍ରହଣ ଚିତ୍ତେ ॥
ସ୍ୱଶରୀର ଗୃହ ପ୍ରାଣ ଜୀବନ ସହିତେ ।
ନିବେଦନ କର ନିତ୍ୟ ପ୍ରଭୁଙ୍କ ପାଦଗତେ ॥
ଉଦାସୀନ ହୋଇ ରହୁଥିଲେ ଜଗତରେ ।
ଅଭୟ ପଦ ପ୍ରାପତ ହେବ ଅନ୍ତିମରେ ॥
ମୋର ଧନ, ମୋର ଦ୍ରବ୍ୟ, ମୋର ଏହି ଭୂମି ।
ଏହି ଅହଙ୍କାରେ ଜୀବ ହେଉଥାଏ ଭ୍ରମି ॥
ମନରେ ଭାବଇ ଏହୁ ପଦାର୍ଥ ମୋହର ।
ସେହି ପଦାର୍ଥକୁ ଚନ୍ତି ଚଳଇ ଶରୀର ॥

ଏହିରୂପେ ଅହଙ୍କାର ସୁଦୃଢ଼ ହୋଇଣ ।
ହୃଦୟରେ ରହିଅଛି ବସତି କରିଣ ॥
ସେହି ଅହଙ୍କାର ଗର୍ବ ତେଜିଣ ଅନ୍ତରୁ ।
ବିଚାର କରିବ ମନେ ସେବି ସଦଗୁରୁ ॥
ଯେତେକ ପଦାର୍ଥ ଅହଙ୍କାର ଜାତ କରେ ।
ସେ ସର୍ବ ନୁହେ ମୋହର ଭାବିବ ଅନ୍ତରେ ॥
ମୁହିଁ ପଦାର୍ଥ ନୁହଇ କେବଳ ଚିଦଂଶ ।
ଦେହ ମଧ୍ୟେ ଆତ୍ମାରୂପେ ହୋଇଛି ପ୍ରକାଶ ॥
ହୃଦ ପ୍ରଶାନ୍ତ ବୃତ୍ତିରେ କରି ସୁବିଚାର ।
ବାସନା ସମୂହ ତ୍ୟାଗ କରିବ ସତ୍ବର ॥
ଦେହ ରକ୍ଷା ନିମିତ୍ତଟି କରୁଥିବ କର୍ମ ।
ବ୍ରହ୍ମଭକ୍ତିରେ କଦାଚ ନ କରିବ ଭ୍ରମ ॥
ଅନ୍ତରେ ତ୍ୟାଗ ବୈରାଗ୍ୟ କରିବ ଧାରଣ ।
ଇନ୍ଦ୍ରିୟଗଣ କର୍ମରେ କରିବେ ଭ୍ରମଣ ॥
ଆରମ୍ଭ ଗର୍ବ ସମସ୍ତ ତେଜିବ ହୃଦରୁ ।
ବିଚରଣ କରୁଥିବ ସୁମରି ଶ୍ରୀଗୁରୁ ॥
ଆନନ୍ଦ ବ୍ରହ୍ମଙ୍କି ଚିତ୍ତ କରିବ ଅର୍ପଣ ।
ଆଶ୍ରିତ ପଦରେ ଭକ୍ତି ରଖି ଅନୁକ୍ଷଣ ॥
ଏହିରୂପେ ରହି କର୍ମ କଲେହିଁ ସଂସାରେ ।
ନିଷ୍କାମପଦକୁ ପ୍ରାପ୍ତ ହେବ ସହଜରେ ॥
ବିଷୟ ଦୋଷ ସକଳ ଅଙ୍ଗେ ନ ଲାଗଇ ।
ପଦ୍ମପତ୍ର ପରେ ଯେହ୍ନେ ବାରିବିନ୍ଦୁ ଥାଇ ॥
ସେହିରୂପେ ଆତ୍ମା ଥାଏ ଶରୀର ମଧ୍ୟରେ ।
ଅନାସକ୍ତ ଭାବେ କର୍ମ କରିବ ଯତ୍ନରେ ॥

ବିଷୟ ବିଷରୁ ମନ କରି ପ୍ରତ୍ୟାହାର ।
ଈଶ୍ୱର ବ୍ରହ୍ମ ହୃଦୟରେ କରଣ ସୁସ୍ଥିର ॥
ଅସମରଣ ସଂସାରରେ କର୍ମ କଲେ ନିତ ।
ଅନ୍ତଃକରଣରେ କେବେଁ ନ ଘଟେ ବିକୃତ ॥
ବ୍ରହ୍ମଙ୍କୁ ସ୍ମରଣ କରି କର ଶୁଦ୍ଧ କର୍ମ ।
ନିଷ୍କାମରେ ପାଳିତ ହୋଇବ ସତ୍ୟଧର୍ମ ॥
ସର୍ବକାମ ଅକାମରେ ଦୃଢ଼ ଭକ୍ତିଯୋଗେ ।
ବ୍ରହ୍ମ ଆରାଧନା କରେ ଯେହୁ ଅନୁରାଗେ ॥
ସେହି ଭକତ ନିଷ୍କାମ ପଦକୁ ଲଭଇ ।
ସର୍ବ କାମନା ଭକ୍ତିରେ ବିଲୁପ୍ତ ହୁଅଇ ॥
ପରଂବ୍ରହ୍ମ ବିନେ ଅନ୍ୟେ ଭକତ ଯେ କରେ ।
ସକାମ ଫଳକୁ ପ୍ରାପ୍ତ ହୁଅଇ ସେ ସ୍ଥିରେ ॥
ଏକ ଅଦ୍ୱିତୀୟ ବ୍ରହ୍ମ ଅଟନ୍ତି ନିଷ୍କାମ ।
ତାହାଙ୍କ ବ୍ୟତୀତ ସର୍ବେ ଅଟନ୍ତି ସକାମ ॥
ସେହି ପରଂବ୍ରହ୍ମ ଉପାସନା କର୍ମ ଯେତେ ।
ନିଷ୍କାମ ପଦକୁ ପ୍ରାପ୍ତ ହୁଅଇ ସୁଚିତେ ॥
ପରମାତ୍ମା ନିଷ୍ଠାରୂପ କର୍ମ ଯେ କରଇ ।
ସେହି କର୍ମ ଜ୍ଞାନଭକ୍ତି ପଦକୁ ଲଭଇ ॥
କରେ ନାହିଁ ଅହଙ୍କାର ଇନ୍ଦ୍ରିୟ କ୍ରିୟାରେ ।
ଅହଂ ପଦକୁ ସ୍ଥାପଇ ଭକ୍ତି ବିଜ୍ଞାନରେ ॥
ଅନାସକ୍ତ ହୋଇ ବିହରଇ ସଂସାରରେ ।
ନିଷ୍କାମ ବ୍ରହ୍ମଙ୍କୁ ପ୍ରାପ୍ତ ହୁଏ ଚରମରେ ॥
ଫଳାନୁସନ୍ଧାନ କର୍ମେ ହୋଇଣ ତତ୍ପର ।
ନିତ୍ୟ ନୈମିତ୍ତିକ ଯଜ୍ଞ ବ୍ରତାଦି ଅପର ॥

ଦୈବକର୍ମ ପିତୃକର୍ମ କରେ ଯେ ନିରତେ ।
ତାହୁ ବନ୍ଧନରେ ସେହୁ ରହଇ ସତତେ ॥
ଇନ୍ଦ୍ରିୟ ବିଳାସେ ସଦା ହୋଇଣ ଆସକ୍ତ ।
ଆଧ୍ୟାତ୍ମିକ ବିଷୟରୁ ହୁଅଇ ବଞ୍ଚିତ ॥
କର୍ମରୂପ ରଜ୍ଜୁ ମଧ୍ୟେ ଆବଦ୍ଧ ହୁଅଇ ।
ନିତ୍ୟ ଆନନ୍ଦ ପଦକୁ ପ୍ରାପତ ନୁହଇ ॥
ଜନ୍ମମରଣାଦି ରୂପ କର୍ମଫଳ ପାଇ ।
ସୁଖଦୁଃଖ ଭୋଗ କରେ କଳେବର ବହି ॥
ବିବିଧ କର୍ମରେ ସଦା ହୋଇଣ ଯନ୍ତ୍ରିତ ।
ମାୟାଜାଲ ବନ୍ଧନରେ ହୁଅଇ ଅଯୁକ୍ତ ॥
ମୋର ପୁତ୍ର, ମୋର ମିତ୍ର, ମୋର ବନ୍ଧୁଜନ ।
ମୋର ଭ୍ରାତ ମାତ ସଖା ଛନ୍ତି ଭିନ୍ନ ଭିନ୍ନ ॥
ମୋର ପ୍ରାଣ, ମୋର ମନ, ମୋର ଏହୁ ଦେହ ।
ମୋର ଏ କ୍ଷେତ୍ର ସମ୍ପଦ, ମୋର ଏହି ଗୃହ ॥
ମୁହିଁ ଏ ସର୍ବ ବସ୍ତୁର ଅଟେ ଅଧିପତି ।
ଏହୁ ଅହଂକାରେ ମଜ୍ଜି ଥାଏ ମୂଢ଼ମତି ॥
ଆତ୍ମଜ୍ଞାନ ପଦ ତାକୁ ନୁହଇ ଗୋଚର ।
ଅନିତ୍ୟ ପଦାର୍ଥମାନ ଭାବଇ ମୋହର ॥
ଏ ରୂପ ମମତ୍ୱ ଫନ୍ଦେ ମୋହିତ ସେ ହୋଇ ।
କୁଚକ୍ରଚକ୍ରର ପ୍ରାନ୍ତେ ସଦା ଭ୍ରମୁଥାଇ ॥
କ୍ଷଣମାତ୍ର ଆତ୍ମାରେ ବିଶ୍ରାନ୍ତ ନୁହେ ମନ ।
ଅସ୍ଥାୟୀ ବିଷୟ କର୍ମେ ଭ୍ରମେ ଘୋରବନ ॥
ବାହ୍ୟ କ୍ଷଣିକ କର୍ମରେ ଅବିବେକ ହୁବେ ।
କ୍ଷୟ କରଇ ବୟସର ଗର୍ବେ ॥

ବିଷୟ ଗ୍ରାହ ଅସ୍ମାକୁ କରଣ ଅଯୁତ ।
ଭବସାଗର ମଧ୍ୟରେ କରାଏ ମଜ୍ଜିତ ॥
କାଳ ବଳବଳେ ଅସ୍ମାକୁ କରଇ ନିହତ ।
ଦୁର୍ଲ୍ଲଭ ଜନ୍ମ ପଦରୁ କରାଇ ବର୍ଜିତ ॥
ଏହିରୂପ ସକାମ ଅର୍ଜିତ କର୍ମଫଳ ।
ଜନ୍ମ ଜନ୍ମାନ୍ତରେ ଭୋଗ ହୁଏ ଅବିରଳ ॥
ପରମ ନିଷ୍କାମ କର୍ମ କରେ ଯେ ନିରତେ ।
ଅଭୟ ପଦକୁ ପ୍ରାପ୍ତ ହୁଅଇ ସୁଖରେ ॥
ଦେହ ବିକାର ବସ୍ତୁକୁ ଅନିତ୍ୟ ଭାବଇ ।
ନିତ୍ୟ ଅଦ୍ୱୈତ ବ୍ରହ୍ମଙ୍କୁ ସର୍ବଦା ଚିନ୍ତଇ ॥
ସର୍ବଦା ସତ୍‌କର୍ମ ମାର୍ଗେ ହୋଇ ଯତ୍ନବାନ ।
କାୟମନୋବାକ୍ୟେ କ୍ରିୟା କରେ ଅନୁଷ୍ଠାନ ॥
ସେହି ସର୍ବ କର୍ମ ପରଂବ୍ରହ୍ମେ ସମର୍ପନ୍ତି ।
ତାହାଙ୍କୁ ପ୍ରାପତ ହୁଏ ନିଶ୍ଚେ ମୋକ୍ଷଗତି ॥
ଯେତେ ଏ କ୍ଷେତ୍ର ସମ୍ପଦ ଦାରା ସୁତ ମିତ୍ର ।
ଯେତେ ବା ଦୃଶ୍ୟ ହୁଅଇ ଜଗତେ ପଦାର୍ଥ ॥
ସକଳ ଦ୍ରବ୍ୟର ଅଧିପତି ପରମାତ୍ମା ।
ମୁହିଁ ତାହାଙ୍କର ହୋଇଅଛୁ ଅଧୀନାତ୍ମା ॥
ଯଦ୍ୟପି ବାହାରେ ଲୋକସମାଜ ମଧ୍ୟରେ ।
ପଦାର୍ଥ ପ୍ରମାଣ କରାଯିବାର ସ୍ଥଳରେ ॥
ପଦାର୍ଥରେ ମମତା ରଖିଲେ ବାହ୍ୟ ମତେ ।
ପ୍ରଭୁଙ୍କର ବୋଲି ଭାବୁଥିବ ଅନ୍ତର୍ଗତେ ॥
ସଜ୍ଜନ ସମୀପେ 'ମୋର' ପଦ ନ କହିବ ।
ସଦ୍‌ଗୁରୁ ପାଦରେ ପିଣ୍ଡ ପ୍ରାଣ ଅରପିବ ।୧୦୦।

ନିଷ୍କାମ କର୍ମଯୋଗକୁ କରଣ ସାଧନ ।
ଅନ୍ତିମ କାଳରେ ପ୍ରାପ୍ତ ହେବ ମୋକ୍ଷଧାମ ॥
ଏକ ପ୍ରଭୁଙ୍କୁ ସର୍ବଦା କରୁଥିବ ଭାବନ ।
ନିଷ୍କାମ କର୍ମ ଯୋଗକୁ କରନ୍ତୁ ବର୍ଜନ ॥

ଇତି ଶ୍ରୀମଚ୍ଛିନ୍ନମସ୍ତ ବ୍ରହ୍ମଗୀତା ବିଶ୍ୱଙ୍କ ନିଷ୍କାମ କର୍ମଯୋଗ
ବର୍ଣ୍ଣନେ ସଦସତ୍ କର୍ମ ବିବରଣେ କର୍ମବିଷୟ
ଦୋଷ ଭଙ୍ଗକାରଣୋ ନାମ ତୃତୀୟୋଽଧ୍ୟାୟଃ । ୩ ।

---

## ଚତୁର୍ଥ ଅଧ୍ୟାୟ

### ବିଶୁଦ୍ଧ ଜ୍ଞାନଯୋଗ

ବ୍ରହ୍ମଜ୍ଞାନ ବିହୀନେ ନିଷ୍କାମ କର୍ମଯୋଗ ।
ନିସ୍ତାର କରି ନ ପାରେ ଭବସିନ୍ଧୁ ମାର୍ଗ ॥
ନିଷ୍କାମ ଭକତିଯୋଗ ହୁଏ ବିଚଳିତ ।
ସୁଜ୍ଞାନ ପଦ ଯଦ୍ୟପି ନୁହେ ସୁପ୍ରାପତ ॥
ଜ୍ଞାନ ଭକତି ଯତନେ କଲେଟି ସାଧନ ।
ସେହୁ ଭକତ ହୁଅଇ ପରମ ନିର୍ଗୁଣ ॥
ସୁଚିତ୍ତରେ ବ୍ରହ୍ମପଦ ହୁଅ ଅବଗତ ।
ସେହି ପଦ ସବୁଠାରୁ ଅଟଇ ସୁବୃହତ ॥
ସାଧନ ଚତୁଷ୍ଟୟରେ ହେଲେ ଅଧିକାରୀ ।
ବ୍ରହ୍ମ ବିଷୟ ସମ୍ବନ୍ଧେ ହେବୁ ନହେ ସ୍ଥିର ॥
ନିତ୍ୟ ପ୍ରତ୍ୟେ ଜନ ଆତ୍ମଜ୍ଞାନ ହୁଏ ହିତ ।
ଅଜ୍ଞାନ ଆପଣା ସ୍ୱୟଂ ହୁଅଇ ବିନାଶ ॥

ବ୍ରହ୍ମର ଲକ୍ଷ୍ୟ ଲକ୍ଷଣ କୁହେ ବର୍ଣ୍ଣମୀୟ ।
ବେଦ ବେଦାନ୍ତେ ବର୍ଣ୍ଣିତ ଅଛନ୍ତି କତିପୟ ॥
ଏକ ବ୍ରହ୍ମ ଦ୍ୱୈତ ଭାବେ ହୋଇଛନ୍ତି ବିଭକ୍ତ ।
ସଗୁଣ ନିର୍ଗୁଣ ପୁନଃ ସ୍ୱରୂପ ତଟସ୍ଥ ॥
ସଗୁଣ ତଟସ୍ଥ ବ୍ରହ୍ମସୂତ୍ର ବର୍ଣ୍ଣିବରେ ।
ବ୍ରହ୍ମ ସୂଚନା ହୁଅଇ ଭାଷେ ନିଗମରେ ॥
ଯାହାଠାରୁ ଏହି ବିଶ୍ୱ ହୋଇଛନ୍ତି ସମ୍ଭୂତ ।
ସ୍ଥିତି ଲୟ ପୁଣି ହୁଏ ଯନ୍ମିରେ ମିଳିତ । ୧୦ ।
ସର୍ବଭୂତଗଣଙ୍କୁ ସେ କରନ୍ତି ରଚନା ।
ବାକ୍ୟେ ସମ୍ଭବ ନୁହଇ ତା ଗୁଣ ବର୍ଣ୍ଣନା ॥
ସ୍ୱଶକ୍ତିରେ ପାଳନ କରନ୍ତି ନିରବଧି ।
ନିମିଷମାତ୍ରେ କଳନ କାର୍ଯ୍ୟ ହୁଏ ସିଦ୍ଧି ॥
ଏହିରୂପ ଅଦ୍ଭୁତ ପ୍ରକ୍ରିୟା ହୁଅଇ ।
କ୍ଷଣ ମାତ୍ରେ ଅଗଣିତ ବ୍ରହ୍ମାଣ୍ଡ ସୃଜଇ ॥
କ୍ଷଣେ କ୍ଷରଣ ବ୍ୟକ୍ତ ହୁଏ ବିରାଟ ମହିମା ।
ମହିମାମୟ ଅଟଇ ଯାହାର ଗରିମା ॥
ପ୍ରାଣୀମାନଙ୍କ ହୃଦରେ ବହି ଅବସ୍ଥିତ ।
କାର୍ଯ୍ୟ କାରଣରେ କରିବନ୍ତି ପ୍ରବର୍ତ୍ତିତ ॥
ସମସ୍ତ ଶରୀର ଯେହୁ କରନ୍ତି ନିର୍ମାଣ ।
ସେହି ଶରୀରକୁ ଯେହୁ କରନ୍ତି ଗ୍ରହଣ ॥
ଅଶେଷ କୋଟି ବ୍ରହ୍ମାଣ୍ଡେ ରାଜରାଜେଶ୍ୱର ।
ସର୍ବଜନ ପିତାମାତା ବନ୍ଧୁ ସହୋଦର ॥
ଏହି ପୃଥିବୀ ଯାହାର ଅଟେ ପାଦପୀଠ ।
ପୃଥିବୀ ହୋଇଛନ୍ତି ଯେଉଁ ତେଜରେ ଗରିଷ୍ଠ ॥

ଯାହାର ଉଦରେ ଅଛୁ ଏହୁ ସର୍ବ ବିଶ୍ବ ।
ବିଶ୍ବ ପ୍ରକାଶର ପ୍ରଭୁ ଅଟଇ ସର୍ବସ୍ବ ॥
ଚନ୍ଦ୍ରାର୍କ ଚକ୍ଷୁ ସ୍ବରୂପ ଅଟେ ଯାହାର ।
ବେଦ ସମୂହ ବଚନ ଅଟଃ ଯାହାଙ୍କର । ୨୦ ॥
ଦିଗଗଣ ଶ୍ରୋତ୍ରରୂପେ ଭବନ୍ତ ଶ୍ରବଣ ।
ପୂର୍ବ ପଶ୍ଚିମ ଅଟଇ ଯାହାର ଅନନ ॥
ମୂର୍ଦ୍ଧାଦେଶ ହୋଇଅଛୁ ଗଗନ ଅନଳ ।
ବାୟୁ ହୋଇଅଛୁ ଯାର ପ୍ରାଣ ହୃଦସ୍ଥାଳ ॥
ଏହିରୂପେ ଅଦ୍ଭୁତ ବିକ୍ରମେ ଯାର ସ୍ଥିତ ।
ଏକାଂଶରେ ସର୍ବ ବିଶ୍ବ ବ୍ୟାପି ରହିଛନ୍ତି ॥
ବାଚ୍ୟାର୍ଥରେ ସର୍ବ ଖଲ୍ବିମଯ୍ୟ ବ୍ରହ୍ମ ହୁଏ ।
ଆତ୍ମା ସ୍ବରୂପରେ ରହିଛନ୍ତି ସର୍ବ କାୟେ ॥
ଏହିରୂପ ତଟସ୍ଥ ସଗୁଣ ନାମେ ଖ୍ୟାତ ।
ବ୍ରହ୍ମସୂତ୍ରର ଲକ୍ଷଣ ହୁଅଇ ସୂଚିତ ॥
ନିର୍ଗୁଣ ବ୍ରହ୍ମପଦର ଲକ୍ଷଣ ସ୍ବରୂପ ।
ସତ୍ୟଜ୍ଞାନ ଅନନ୍ତ ଯେ ଅନନ୍ଦ ଅମାପ ॥
ଅମୃତ ଅବ୍ୟୟ ଅବିନାଶୀ ପରାତ୍ପର ।
ଅଗାଧ ଅପୂର୍ଣ୍ଣ ଅଖଣ୍ଡିତ ନିର୍ବିକାର ॥
ଅନାମ ଅବ୍ୟକ୍ତ ଅଜ ଅଲେପ ଅଦ୍ବୟ ।
ଅଜର ଅମର ଅନିର୍ଦ୍ଦେଶ୍ୟ ନିର୍ବିଷୟ ॥
ଅଚଳ ଅମଳ ପୂର୍ଣ୍ଣାନନ୍ଦ ଅଣାକାର ।
ଅଲେଖ ଅରୂପ ଅନ୍ତର୍ଯାମୀ ସର୍ବେଶ୍ବର ॥
ସଚ୍ଚିଦାନନ୍ଦ ସ୍ବରୂପ ଲକ୍ଷଣ ସଂଯୁତ ।
ନିର୍ଗୁଣ ବ୍ରହ୍ମ ନାମରେ ଅଟଇ ବିଖ୍ୟାତ । ୩୦ ॥

ସୃଷ୍ଟିତତ୍ତ୍ୱ ବର୍ଣ୍ଣନରେ ସଗୁଣ ନିର୍ଗୁଣ ।
ବ୍ରହ୍ମ ବୋଲି ଭାଗ ପ୍ରବଦନ୍ତି ଜ୍ଞାନଗଣ ॥
ବ୍ରହ୍ମ ଏକ ଅଦ୍ୱିତୀୟ ଦ୍ୱିତୀୟ ନୁହନ୍ତି ।
ଦେବମାନବମାନଙ୍କ ଉପାସ୍ୟ ଅଟନ୍ତି ॥
ସେହି ଏକ ନିରାଲମ୍ବ ସମସ୍ତ ଆଶ୍ରୟ ।
ସର୍ବଜନ ସାକ୍ଷୀ ସର୍ବଭୂତ ଗୁହାଶୟ ॥
ସ୍ୱୟଂ ସେ ଅନାଦି ସର୍ବ ଦେବଙ୍କର ଆଦି ।
ପଞ୍ଚଭୂତ ସେ ସ୍ଥାନକୁ ନ ପାରନ୍ତି ଭେଦି ॥
ସର୍ବ ଜୀବର କାରଣ କାରଣୁ ଅତୀତ ।
ସର୍ବ ଅବସ୍ଥାରେ ସେହି ଥାଆନ୍ତି ନିର୍ଲିପ୍ତ ॥
ସର୍ବଜନଙ୍କ ଜନନୀ ସେହି ଏକ ଦେବ ।
ନାହିଁ ତାଙ୍କ ଜାତକର୍ମ ନାହିଁଟି ଉଦ୍ଭବ ॥
ବିଷୟଙ୍କରୁ ଅତୀତ ବିଶୁଦ୍ଧ ପ୍ରଶାନ୍ତ ।
ମୋକ୍ଷପିପାସୁଜନଙ୍କୁ କରନ୍ତି ସୁଶାନ୍ତ ॥
ସ୍ଥୂଳ ସୂକ୍ଷ୍ମ କାରଣ ଶରୀର ରୂପ ନୁହେ ।
ଅଶରୀରୀ ହୋଇ ବିରାଜିତ ସର୍ବଦେହେ ॥
ସେହି ଏକ ସର୍ବଜୀବଙ୍କର ପ୍ରାଣପତି ।
ତାଙ୍କ ବିନା ଦ୍ୱିତୀୟ କେ ନାହିଁ ଅଧିପତି ॥
ସେହି ଏକ ସର୍ବଜନଙ୍କର ମହାପ୍ରଭୁ ।
ସର୍ବ ବିଶ୍ୱ ବ୍ୟାପି ରହିଛନ୍ତି ସେହି ବିଭୁ ।୨୦।
ସେହି ଏକ ବ୍ରହ୍ମଜ୍ଞାନ ଭକ୍ତି ଉଦ୍ଦେଶ୍ୟରେ ।
ସଗୁଣ ବର୍ଣ୍ଣିତ ହୋଇଅଛି ବେଦାନ୍ତରେ ॥
ତହୁଁ ସୁଜ୍ଞେ ବିଚାରି ବ୍ରହ୍ମର ମହିମା ।
ଏକ ନିର୍ଗୁଣବ୍ରହ୍ମଙ୍କୁ କରିବ ଭାବନା ॥

ସେହୁ ଏକ ସଚ୍ଚନ ଯେ ଛନ୍ତି ବିଦ୍ୟମାନ ।
ମାୟା ଉପାଧିରେ ନାମ ହୁଅଇ ସଗୁଣ ॥
ଅବିଦ୍ୟା ମାୟା ଉପାଧି ମଧ୍ୟେ ଭେଦ ହୋଇ ।
ଜୀବ ଈଶ୍ୱର ନାମରେ କଥିତ ହୁଅଇ ॥
ସେହୁ ଏକ ବ୍ରହ୍ମ ପ୍ରତିବିମ୍ବ ଔପାଧିକ ।
ଉପାଧି ଭେଦରେ ଦୃଶ୍ୟ ହୁଅଇ ଅନେକ ॥
ମାୟାଦୃଶ୍ୟ ବସ୍ତୁ ଯେତେ ହୋଇଛନ୍ତି ରଚନା ।
ବ୍ରହ୍ମ ଅଭିନ୍ନ ତହିଁରେ ହୋଇଛନ୍ତି ଚେତନା ॥
କଳ୍ପିତ ବସ୍ତୁକୁ ତେଜି ଅଭିନ୍ନ ଲକ୍ଷରେ ।
ଲକ୍ଷ୍ୟ ସ୍ଥିର କର ନେଇ ନିର୍ଗୁଣ ବ୍ରହ୍ମରେ ॥
ସେହୁ ଏକ ବ୍ରହ୍ମ ସର୍ବଜୀବଙ୍କ ଜୀବନ ।
ସେହୁ ତେଜରୁ ସମସ୍ତେ ହୁଅନ୍ତି ଉତ୍ପନ୍ନ ॥
ସେହୁ ଏକ ନିଷ୍କାମ ନିର୍ମୋହ ନିରଞ୍ଜନ ।
ପରମାତ୍ମା ପରଂଭୂମା ନିତ୍ୟ ସନାତନ ॥
ପରମ ଆଶ୍ରୟ ଦେବ ଏକ ସେ ଅଟନ୍ତି ।
ତାଙ୍କୁ ଆଶ୍ରା କଲେ ଜୀବ ପାଏଟି ସୁଗତି ।୫୦।
ଚିନ୍ତ୍ୟ ଧ୍ୟେୟ ବସ୍ତୁ ସେହୁ ଏକ ପରଂବ୍ରହ୍ମ ।
ସେହୁ ଚିନ୍ତନରେ ଚିତ୍ତ ହୁଏ ସମାଧାନ ॥
ଦେଶ କାଳ ବସ୍ତୁପରିଚ୍ଛେଦରୁ ରହିତ ।
ଚିଦାନନ୍ଦ ଅଟଳ ସଦା ବିଶୁଦ୍ଧ ଅଦ୍ୱୈତ ॥
ନିର୍ମଳ ବିବେକ ଆତ୍ମା ବୁଦ୍ଧି ହେଲେ ପ୍ରାପ୍ତ ।
ଅଭୟ ବ୍ରହ୍ମପଦରେ ହୁଅଇ ସେ ଭକ୍ତ ॥
ସ୍ୱୟଂ ଆତ୍ମା ପର ଜ୍ଞାନୀ ବିବେକୀ ଯେ ଜନ ।
ସ୍ୱାନୁଭୂତମାର୍ଗେ ବ୍ରହ୍ମ କରନ୍ତି ଦର୍ଶନ ॥

ଇନ୍ଦ୍ରାଦ୍ୟଗଣ ଚେଷ୍ଟାରେ ଦୃଶ୍ୟ ସେ ନୁହନ୍ତି ।
ଆତ୍ମଜ୍ଞାନ ପ୍ରଦୀପରେ ପ୍ରକାଶ ହୁଅନ୍ତି ॥
ବ୍ରହ୍ମତେଜ ପ୍ରାପ୍ତ ହୋଇ ସର୍ବେନ୍ଦ୍ରିୟଗଣ ।
ସ୍ୱ ସ୍ୱ ବୃତ୍ତି କର୍ମ କରୁଥାନ୍ତି ଆଚରଣ ॥
ସେହି ତେଜେ ରବି ଚନ୍ଦ୍ର ନକ୍ଷତ୍ର ବିଦ୍ୟୁତ ।
ଗଗନମଣ୍ଡଳେ ହୋଇଅଛନ୍ତି ଶୋଭିତ ॥
ଦାବାଗ୍ନି ହୋଇଅଛି ସେହି ପ୍ରକ୍ରିୟାରେ ।
ଅଗ୍ନିର ଉତ୍ତାପ ହୁଏ ବ୍ରହ୍ମଙ୍କ ତେଜରେ ॥
ବାୟୁ ସଦା ଗତି କରେ ବ୍ରହ୍ମତେଜ ବଳେ ।
ସେହି ତେଜେ ଭବ ବନ୍ଧୁଅଛି ଏହି ମହୀ ॥
ସେହି ମନ୍ତ୍ରମାରେ ଜଳ ହେଉଛି ବର୍ଷଣ ।
ଶୀତଳ ଗୁଣକୁ ଜଳ କରିଛି ଧାରଣ ।୬୦।
ନକ୍ଷେତ୍ରମଣ୍ଡଳ ପ୍ରକାଶ ତାହାଙ୍କ ତେଜରେ ।
ଓତପ୍ରୋତଭାବେ ପୂରିଛନ୍ତି ସର୍ବଠାରେ ॥
ସର୍ବ ବ୍ରହ୍ମାଣ୍ଡ ଆଶ୍ରୟ ଏକ ପରଂବ୍ରହ୍ମ ।
ସର୍ବ ଭୂମଣ୍ଡଳେ ସେହି ଏକ ମାତ୍ର ଧର୍ମ ॥
ସର୍ବ ଉପାଧିରୁ ମୁକ୍ତ ସର୍ବ ତତ୍ତ୍ୱାତୀତ ।
ଏକ ଅଦ୍ୱିତୀୟ ତତ୍ତ୍ୱେ ରହିଛନ୍ତି ସ୍ଥିତ ॥
ପ୍ରଜ୍ଞାନ ଘନରୂପ ସତ୍ୟ ସର୍ବ ଅନ୍ତର୍ଯାମୀ ।
ବିଜ୍ଞାନାନନ୍ଦ ବିହାରୀ ମହାଶୂନ୍ୟଗାମୀ ॥
ଅଚ୍ଛେଦ୍ୟ ଅଭେଦ୍ୟ ଅନାହତ ଅବିନାଶୀ ।
ଅଦୃଶ୍ୟଭାବରେ ସର୍ବଘଟେ ଛନ୍ତି ପୂରି ॥
ମନ ବଚନରେ କେବେଁ ନୁହନ୍ତି ଗୋଚର ।
ସାକ୍ଷୀ ସ୍ୱରୂପରେ ନିତ୍ୟ କରନ୍ତି ବିହାର ॥

ଅକୃତ ବିକୃତ ନାହିଁ ସେ ବ୍ରହ୍ମ ତେଜରେ ।
ବିକାର ବିବର୍ଜି ନୁହେ କେବେଁ ନିକାଳରେ ॥
ସ୍ୱୟଂ ଭବେ ନିକାଳରେ ଛନ୍ତି ବିଦ୍ୟମାନ ।
ଉତ୍ପତ୍ତି ସ୍ଥିତି ପ୍ରଳୟେ ନୁହନ୍ତି ମଳିନ ॥
ସର୍ବଦା ଦେଦୀପ୍ୟମାନ ସଚ୍ଚିଦାନନ୍ଦ ଜ୍ୟୋତି ।
ପିଣ୍ଡ ବ୍ରହ୍ମାଣ୍ଡର ଊର୍ଦ୍ଧ୍ୱେ କରନ୍ତି ବସତି ॥
ସେହି ଚିଦାନନ୍ଦ ଭାବରେ ହୋଇଲେ ଭାବିତ ।
ହୃଦ ମଧ୍ୟେ ବ୍ରହ୍ମପ୍ରଭା ପ୍ରକାଶେ ସତତ ।୨୦।
ପୁରୁଷକାର ବଳରେ ଶୁଭ ବାସନାରେ ।
ଜ୍ଞାନ ଭକତି ସାଧନ କରିବ ଯତ୍ନରେ ॥
ପ୍ରଥମେ ସୁସାଧୁସଙ୍ଗ ଶାସ୍ତ୍ର ଅଧ୍ୟୟନ ।
ବୈରାଗ୍ୟଭାବରେ ସଦା ହେବ ସଯତନ ॥
ଜ୍ଞାନଭୂମିର ମଧ୍ୟରେ ହୋଇବ ପ୍ରବେଶ ।
ସଂସାର ବିଷୟେ ସଦା ରହିବ ଉଦାସ ॥
ଶୁଭେଚ୍ଛା ପଦ ସହଜେ ହୋଇଲେ ସମ୍ପନ୍ନ ।
ଦ୍ୱିତୀୟ ପଦକୁ ଚିତ୍ତ କରିବ ଗ୍ରହଣ ॥
ସତ ଶିକ୍ଷା ସଦାଚାରେ କରିବ ପାଳନ ।
ଅସତ କାର୍ଯ୍ୟରୁ ସଦା ହୋଇବ ବିଚ୍ଛିନ୍ନ ॥
ବିଚାରଣା ପଦ ସଦା ହୃଦରେ ବିଚାରି ।
ସଜ୍ଜନଙ୍କ ପଥ ସଦା ଥିବ ଅନୁସରି ॥
ଇନ୍ଦ୍ରିୟଗଣ କର୍ମରେ ଥିଲେ ଅନୁରକ୍ତ ।
ବିଷୟବାସନା ବଶେ ନୋହିବ ଆସକ୍ତ ॥
ତୃତୀୟ ପାଦ ଯେ ତନୁମାନସୀ ଅଟଇ ।
ଇନ୍ଦ୍ରିୟଗଣକୁ ସଦା ଜୟ କରୁଥାଇ ॥

ଏହି ନୟ ପାଦ କଲେ ଅଭ୍ୟାସରେ ଯୁକ୍ତ ।
ବିଷୟ ବିଷରୁ ଶୀଘ୍ର ହୁଅଇ ବିରକ୍ତ ॥
ମଡ଼ ସ୍ୱରୂପରେ ଆତ୍ମା ହେଲେ ଉପସ୍ଥିତ ।
ସତ୍ୱାପତ୍ତି ପାଦ ନାମ ଅଟଇ ଚତୁର୍ଥ ।୮୦।
ପୂର୍ବୋକ୍ତ ଚତୁର୍ଥାବସ୍ଥା ହୋଇଲେ ଅଭ୍ୟାସ ।
ବିଶୁଦ୍ଧ ସତ୍ୱ ହୃଦରେ ହୁଅଇ ପ୍ରକାଶ ॥
ରଜ ତତ୍ତ୍ୱ ତମ ତତ୍ତ୍ୱ ହୁଅଇ ବିନାଶ ।
ଅସଂସକ୍ତ ନାମିକା ଯେ ଭୂମିରେ ପ୍ରବେଶ ॥
ପଞ୍ଚମ ଜ୍ଞାନଭୂମିରେ ହୋଇ ସମାଯୁକ୍ତ ।
ପ୍ରପଞ୍ଚ ବିଷୟେ ହେବ ନାହିଁ ଅନୁରକ୍ତ ॥
ଷଷ୍ଠୀ ଭୂମି ତ ଅଟଇ ପଦାର୍ଥ ଭାବନା ।
ବାହ୍ୟ ଅଭ୍ୟନ୍ତର ପ୍ରତି ନ କର ଚିନ୍ତନ ॥
ପ୍ରଯତ୍ନରେ ପରମାତ୍ମା ପାଦେ କର ଭକ୍ତି ।
ପ୍ରାକୃତଜ୍ଞାନ ଅଜ୍ଞାନେ ହୁଅଇ ପୀରତି ॥
ଷଷ୍ଠଭୂମି ଅଭ୍ୟାସରେ ଅଭେଦ ଜନ୍ମଇ ।
ଏକ ପରଂବ୍ରହ୍ମେ ନିଷ୍ଠା ସତତ ରହଇ ॥
ଅଦ୍ୱୈତ ଆନନ୍ଦ ସଦା ହୁଏ ଜାଗରିତ ।
ବାହ୍ୟ ଅଭ୍ୟନ୍ତର ଭେଦ ହୁଏ ନିବାରିତ ॥
ସପ୍ତମୀ ତୁର୍ଯ୍ୟଗା ଗତି ପ୍ରାପତ ହୁଅଇ ।
ଜୀବନ୍ମୁକ୍ତ ପଦେ ସଦା ଆତ୍ମା ବିହରଇ ॥
ଘଟାନ୍ତର ହେଲେ ଆତ୍ମା ତୁର୍ଯ୍ୟାତୀତ ପଦେ ।
ବିଦେହ ମୁକ୍ତ ଲଭଇ ରହେ ବ୍ରହ୍ମାନନ୍ଦେ ॥
ବହୁ ପୂର୍ବଭାଗ୍ୟେ ସାଧୁଜନଙ୍କ ସଙ୍ଗରେ ।
ଏକ ବ୍ରହ୍ମଜ୍ଞାନପ୍ରାପ୍ତ ହୁଅଇ ସତ୍ୱରେ ।୯୦।

ସେହି ଅଭୟ ପଦରେ କଲେଟି ଭକତ ।
ଅମ୍ଭମାନେ ପଦେ ଅମ୍ଭା ଲଭଇ ସନ୍ତତ ॥
ଅଜ୍ଞାନ ଭୂମି ପାଦକୁ ସୁଜ୍ଞାନ ପଦରେ ।
ବଶୀର ବିଜୟ କର ରହି ସତ୍‌ସଙ୍ଗରେ ॥
ସପ୍ତଜ୍ଞାନଭୂମିକାକୁ ହୋଇ ଅବଗତ ।
ବ୍ରହ୍ମଜ୍ଞାନ ପଦେ ସଦା ରଖ ନେଇ ଚିତ୍ତ ॥
ମାୟା ବିଷୟରେ ମଜ୍ଜି ମନ ହୁଏ କ୍ଷିପ୍ତ ।
ବିଷୟ ବାଧାରେ କ୍ଷଣେ ହୁଅଇ ବିକ୍ଷିପ୍ତ ॥
ମୂଢ଼ତାବଶରୁ ପୁଣି ମଜ୍ଜେ ବିଷୟାରେ ।
ନିରନ୍ତେ ଭ୍ରମଣ କରେ ଅଜ୍ଞାନ ପଦରେ ॥
ଜ୍ଞାନପଦକୁ କଦାଚ ନୁହଇ ଗୋଚର ।
ଦୃଶ୍ୟ ପ୍ରପଞ୍ଚ ବସ୍ତୁକୁ ଭାବଇ ଏ ମୋର ॥
ଏହିରୂପେ ସଦା ମନ ହୁଅଇ ଚଞ୍ଚଳ ।
କ୍ଷଣମାତ୍ର ସ୍ୱବୃତ୍ତିରେ ନ ହୁଏ ନିଶ୍ଚଳ ॥
ନିର୍ମଳ ମନରେ କଲେ ଏକ ବ୍ରହ୍ମେ ଭକ୍ତି ।
ଏକାଗ୍ର ହୁଅଇ ମନ ଜ୍ଞାନପଦ ଶକ୍ତି ॥
ସେହି ଚିନ୍ମୟ ଭକତ ହୋଇଲେ ସୁଦୃଢ଼ ।
ନିରୁଦ୍ଧ ମନ କଦାଚ ନୁହଇ ଅଦୃଢ଼ ।୨୦।
ଏକାଗ୍ର ହୋଇ ବ୍ରହ୍ମରେ ମନ କର ସ୍ଥିର ।
ଏକ ପ୍ରଭୁ ଏକ ସର୍ବ ଜଗତର ସାର ॥
ସେହି ସେ ପ୍ରାଣର ପତି ପ୍ରାଣ ପ୍ରାଣେଶ୍ୱର ।
ଚକ୍ଷୁର ଚକ୍ଷୁ ସ୍ୱରୂପ ଜ୍ଞାନ କର୍ଣ୍ଣଧାର ॥
କର୍ଣ୍ଣେ କର୍ଣ୍ଣ ମନେ ମନ ସର୍ବାଧାର ପତି ।
ସେହି ଏକ ବ୍ରହ୍ମ ସର୍ବଭୂତେ ବ୍ୟାପିଛନ୍ତି ॥

ସୂକ୍ଷ୍ମରୁ ସେ ସୂକ୍ଷ୍ମତର କାହାଣୁଁ କାରଣ ।
ମହତ ବସ୍ତୁରୁ ସେହୁ ଅତି ମହୀୟାନ ॥
ଅକ୍ଷର ସ୍ୱରବ୍ୟଞ୍ଜନଂ ମ.ହାରୁ ଅତୀତ ।
ନାଦବିନ୍ଦୁ କଳାଙ୍କେ ନୁହଇ କଥିତ ॥
ଜ୍ୟୋତିର ଜ୍ୟୋତିସ୍ୱରୂପ ପରମ ନିଦାନ ।
ପରମ ଅକ୍ଷର ବ୍ରହ୍ମ ପରମ ନିର୍ଗୁଣ ॥
ର ଅକ୍ଷର ସର୍ଗରୁ ଅଟନ୍ତି ସେ ଭିନ୍ନ ।
ପରମାତ୍ମା ପରଧାମେ ଛନ୍ତି ବିଦ୍ୟମାନ ॥
ବାହ୍ୟେ ଅଭ୍ୟନ୍ତରେ ଦୂରେ ନିକଟେ ଅଛନ୍ତି ।
ଅନ୍ତର୍ଯାମୀ ସ୍ୱରୂପରେ ପ୍ରକାଶ ହୁଅନ୍ତି ॥
ଅନିର୍ଦ୍ଦେଶ୍ୟ ଅନୁପମ ଅଗୋଚର ଅସୀମ ।
ବ୍ରହ୍ମା ଯାଙ୍କୁ ବର୍ଣ୍ଣିବାକୁ ନୁହନ୍ତିଟି କ୍ଷମ ॥
ପରଂବ୍ରହ୍ମ ଭୟେ ସର୍ବେ ଦେବ ଦିଗପାଳେ ।
ସ୍ୱସ୍ୱକାର୍ଯ୍ୟେ ପ୍ରବର୍ତ୍ତିତ ହୋଇଥାନ୍ତି ବଳେ ।
ସେହୁ ସେ ଜଗତ ମୂଳ କାରଣ ଅଟନ୍ତି ।
ଚେତନ ସ୍ୱରୂପେ ସଦା ପ୍ରକାଶ ହୁଅନ୍ତି ॥
ପାଦବିହୀନେ ସର୍ବତ୍ର କରନ୍ତି ଗମନ ।
ଅପାଣି ହୋଇ ନିପୁର କରନ୍ତି ଧାରଣ ॥
ଅଚକ୍ଷୁରେ ସର୍ବବସ୍ତୁ କରନ୍ତି ଦର୍ଶନ ।
ଅଶ୍ରୋତ୍ରରେ ସର୍ବଶବ୍ଦ କରନ୍ତି ଶ୍ରବଣ ॥
ଅଚିନ୍ତ୍ୟ ହୋଇଣ ସେ ହୁଅନ୍ତି ସର୍ବଜ୍ଞାତା ।
ଅଶେଷ କୋଟି ସୃଷ୍ଟିର ଅଟନ୍ତି ନିୟନ୍ତା ॥
ଲେଖାରେ ନୁହଇ ଶେଷ ତାହାଙ୍କ ମହିମା ।
ଏକ ଅଲେଖ ବ୍ରହ୍ମଙ୍କୁ କର ତୁ ଭଜନା ॥

ସେହି ବ୍ରହ୍ମ କୃପାମୟ ଦୟାର ସାଗର ।
କ୍ଷମାନିଧି ପଦେ ଲଭିଛନ୍ତି ଅଧିକାର ॥
ସେହି ଅଭୟ ପଦରେ ପଶୁଛୁଁ ଶରଣ ।
କୃପା ବଳେ ଆମ୍ଭେ ଲଭୁ ବ୍ରହ୍ମଜ୍ଞାନ ॥
କ୍ଷମାନନ୍ଦ ବ୍ରହ୍ମ ! କ୍ଷମା କର ସର୍ବ ଦୋଷ ।
ତବ ମହିମା ବର୍ଣ୍ଣନ କର ନୁହେ ଶେଷ ।୧୧୮।

ଇତି ଶ୍ରୀମଚ୍ଚିଦ୍ରୂପବ୍ରହ୍ମଗୀତାୟାଂ ବିଶୁଦ୍ଧ ଜ୍ଞାନଯୋଗ କଥନେ ଅଜ୍ଞାନ ମାୟା ମୋହ ନିବାରକରଣେ ସ୍ୱରୂପ ବ୍ରହ୍ମ ନିରୂପଣୋ ନାମ ଚତୁର୍ଥୋଽଧ୍ୟାୟଃ ।୪।

---

## ପଞ୍ଚମ ଅଧ୍ୟାୟ

### ଚିତ୍ତପ୍ରଶାନ୍ତି ଯୋଗ—

ଚିତ୍ତ ପ୍ରଶାନ୍ତିରେ ବ୍ରହ୍ମପଦ ହୁଏ ପ୍ରାପ୍ତି ।
ମଳିନ ଚିତ୍ତରେ ଜ୍ଞାନ ହୁଅଇ ଅପ୍ରାପ୍ତି ॥
ଏହିହେତୁ ଚିତ୍ତ ସଦା କର ସଂଯମନ ।
ବିବେକ-ବାରିରେ ଚିତ୍ତ କର ପ୍ରକ୍ଷାଳନ ॥
ଚିତ୍ତରେ ଯେ ବହୁଅଛୁ ବେନି ଗୋଟି ନଦୀ ।
କଲ୍ୟାଣ ପାପମାର୍ଗରେ ହୋଇଅଛୁ ଛନ୍ଦ ॥
କଲ୍ୟାଣ ପଥରେ ହେଲେ ଚିତ୍ତ ପ୍ରଧାବିତ ।
ବ୍ରହ୍ମଜ୍ଞାନପଦ ନିଶ୍ଚେ ହୁଅଇ ପ୍ରାପତ ॥
ଆତ୍ମା ଊର୍ଦ୍ଧ୍ୱଗାମୀ ହୋଇ ଲଭେ ଚିରଶାନ୍ତି ।
ଭବବନ୍ଧନକୁ ଅତି ତୁଟେ ପ୍ରତ୍ୟାବୃତ୍ତି ॥

ପାପପଥେ ଚିତ୍ତ ଯଦି ଭରେ ବିଚରଣ ।
ଅଜ୍ଞାନ ମାୟା ମୋହରେ ହୁଅଇ ବନ୍ଧନ ॥
ଜନ୍ମରୁ ସେ ଜନ୍ମ ସ୍ତରେ ନିଅଇ ଆତ୍ମାକୁ ।
ଅଧୋପଥେ ନରକଯନ୍ତ୍ରଣା ଭୋଗିବାକୁ ॥
ଆତ୍ମଜ୍ଞାନ ଭକ୍ତି କେବେଁ ନୁହଇ ପ୍ରାପତ ।
ଭବକାରାଗାରେ ଦୁଃଖ ଭୁଞ୍ଜେ ଅପ୍ରମିତ ॥
ଚଞ୍ଚଳ ଚିତ୍ତକୁ ନିତ୍ୟ କରିଣ ସଂଯତ ।
କଲ୍ୟାଣପଥରେ ନେଇ କରିବ ଗୃହୀତ ॥
ଦୁରାଗ୍ରହପ୍ରବୃତ୍ତିରେ ନ ହୋଇବ ରତ ।
ସଦନୁଷ୍ଠାନେ ସର୍ବଦା ରଖିଥିବ ଚିତ୍ତ ।୮୦।
ବିନା ଅଙ୍କୁଶରେ ଯେହ୍ନେ ଦୁଷ୍ଟ ମତ୍ତଗଜ ।
ନିଜ ଇଚ୍ଛା ଗମନରେ ନୁହଇ ସହଜ ॥
ତଦ୍ରୂପ ଚିତ୍ତ ବିଷୟ ଅରଣ୍ୟ ଭୂମିରେ ।
ସୁପଥ ହଜାଏ ନିଜ ଅଜ୍ଞାନବଳରେ ॥
ସୁନିୟମ ବିବେକରେ ହୋଇଣ ଜାଗ୍ରତ ।
ସୁକୃତଭାବେ ଚିତ୍ତକୁ କର ଯେ ଆୟତ୍ତ ॥
ଅଶୁଭ ବାସନା ସର୍ବ କର ପରିହାର ।
ଲୋକମତେ ଯାହା ହେଉଅଛି ବ୍ୟବହାର ॥
ପୁରୁଷାନୁକ୍ରମମତେ ଯାହା ଆଚରନ୍ତି ।
ସେହି କର୍ମାନୁବର୍ତ୍ତୀରେ ଲୋକେ ବିହରନ୍ତି ॥
ଶାସ୍ତ୍ରରେ ଲିଖିତ ଅଛି ନାନା କାମ୍ୟକର୍ମ ।
ଯାହା ଶ୍ରବଣ କଲେହିଁ ଚିତ୍ତ ହୁଏ ଭ୍ରମ ॥
ସାର ଅସାର ନ ଭାବି କଲେକ ଗ୍ରହଣ ।
ମାୟାଯନ୍ତ୍ରିତରେ ଆତ୍ମା ହୁଅଇ ବନ୍ଧନ ॥

ଦେହ ସର୍ବଦା ଲୋଡ଼ଇ ସୁଖ ବ୍ୟବହାର ।
ଶରୀରପୁଷ୍ଟି ସାଧନେ ଯତ୍ନ ନିରନ୍ତର ॥
ପ୍ରାଣିହିଂସା ପର୍ଯ୍ୟନ୍ତରେ କ୍ରିୟା ଆଚରଣ ।
ଅନୁବ୍ରତେ ସ୍ୱଦେହକୁ କରଇ ଯତନ ॥
ଏହିରୂପ ଅଶୁଭ ବାସନା କ୍ରିୟାଦରେ ।
ପୂର୍ବାପରକୁ ନ ଭାବ ଯେତେଲେ ଶରୀରେ । ୨୦ ।
ବ୍ରହ୍ମଜ୍ଞାନ ଭକ୍ତପଦ ହୁଅଇ ବିନାଶ ।
ଜନ୍ମଜନ୍ମାନ୍ତରେ ଆତ୍ମା ଲଭେ ବହୁକ୍ଲେଶ ॥
ପୁରୁଷକାର ବଳରେ ଶୁଭ ବାସନାରେ ।
ଶରୀରକୁ ସଂଯତ କର ସୁସାଧୁ ସଙ୍ଗରେ ॥
ଅସାଧୁଜନର ସଙ୍ଗ କର ପରିତ୍ୟାଗ ।
ଶାସ୍ତ୍ରକୁ ଗ୍ରହଣ କର ବୁଝି ସାରଭାଗ ॥
ଯେଉଁ ବାକ୍ୟ ଅଟେ ଜ୍ଞାନଭକ୍ତିର ତାତ୍ପର୍ଯ୍ୟ ।
ସେହି ଆତ୍ମାର ମଙ୍ଗଳ ହୁଅଇ ନିର୍ଦ୍ଧାର୍ଯ୍ୟ ॥
ନିଯୁମିତ କର୍ମେ କର ସ୍ୱଦେହ ରକ୍ଷଣ ।
ଅନ୍ୟର ସୌନ୍ଦର୍ଯ୍ୟ ନ କରିବ ନିରୀକ୍ଷଣ ॥
ଦେହରକ୍ଷାର୍ଥରେ ନ କରିବ ପାପାଚାର ।
ସ୍ୱବୃତ୍ତି ଅନ୍ତର କରୁଥିବ ନିରନ୍ତର ॥
ମନରୁ ତେଜିବ ଲୋକମତ ବ୍ୟବହାର ।
ଅଧିଗତ ହେବ ସଦା ଅଧ୍ୟାତ୍ମ ବିଦ୍ୟାର ॥
ସଂସାରର କୁବାସନା ହୋଇବ ବିନାଶ ।
ତବେ ସୁନିର୍ମଳ ଭାବ ହେବଟି ପ୍ରକାଶ ॥
ନିଷ୍ପାପୀ ସୁଖୀଜନଙ୍କୁ କରୁଥିବ ପ୍ରେମ ।
ମିଳନଭାବରେ କଦାଚ ନ ହୋଇବ ଭ୍ରମ ॥

ଦୁଃଖିଜନ ପ୍ରତି ନିତ୍ୟ କରିଥିବ ଦୟା ।
କରୁଣା ପଦରେ କେବେଁ ନ କରିବ ମାୟା । ୩୦ ।
ଧାର୍ମିକ ସଜ୍ଜନେ ହର୍ଷ କରିବ ବର୍ଦ୍ଧନ ।
ସନ୍ତୋଷରେ ପ୍ରମୋଦିତ କରିବ ଜୀବନ ॥
ପାପିଜନ ସଙ୍ଗ ସଦା କରିବ ବର୍ଜ୍ଜନ ।
ଉପେକ୍ଷା ଭାବକୁ ଧରି ହେବ ଉଦାସୀନ ॥
ଏହି ନିୟମରେ ଚିତ୍ତ କରିଲେ ସଂଯତ ।
ବ୍ରହ୍ମଜ୍ଞାନପଦ ନିଶ୍ଚେ ହୁଅଇ ପ୍ରାପତ ॥
କାମ କ୍ରୋଧ ଲୋଭ ମୋହ ମଦ ଯେ ମାତ୍ସର୍ଯ୍ୟ ।
ଏହି ଷଡ଼ରିପୁ ହିଦୁଁ କରିବ ନିବାର୍ଯ୍ୟ ॥
ଚିତ୍ତ ରିପୁଗଣଙ୍କର ହୋଇଲେ ଅଧୀନ ।
ଆତ୍ମାର ଘଟଇ ନିଶ୍ଚେ ଅବିଦ୍ୟା ବନ୍ଧନ ॥
କାମଗୁଣକୁ କରିବ ପ୍ରଥମେ ବିଧ୍ୱଂସ ।
ନିଷ୍କାମ ଭକ୍ତକୁ କାମ କରଇ ବିନାଶ ॥
କାମାତୁର ଜନ ସଦା ଅନ୍ଧୀଭୂତ ହୋଇ ।
ଅଜ୍ଞାନ ବିପିନମାର୍ଗେ ଭ୍ରମଣ କରଇ ॥
ମାୟାରଙ୍ଗ ନୃତ୍ୟ ଗୀତ ଗାୟନରେ ମଜ୍ଜି ।
ପ୍ରଭୁ ପାଦପଦ୍ମ କେବେଁ ନ ପାରଇ ଭଜି ॥
କାମିନୀଗଣଙ୍କ ସଙ୍ଗେ ହୁଏ ଅନୁରକ୍ତ ।
କନ୍ଦର୍ପବାଣରେ ସଦା ହୁଅଇ ବ୍ୟଥିତ ॥
କ୍ଷଣେ ହୃଷ୍ଟ କ୍ଷଣେ ତୁଷ୍ଟ ହୁଅଇ ମନରେ ।
ଅତୃପ୍ତ ରହଇ ନିତ୍ୟେ କାମସେବନରେ । ୪୦ ।
ଅନ୍ତଃକରଣ ସର୍ବଦା ହୁଅଇ ଚଞ୍ଚଳ ।
ଆତ୍ମଜ୍ଞାନ ପଦେ କେବେଁ ନୁହଇ ନିଶ୍ଚଳ ॥

ଖଳ ଦୁର୍ଜ୍ଜନ ପାପାତ୍ମା ସଙ୍ଗେ ସଙ୍ଗୀ ହୋଇ ।
କାମ ଚରିତାର୍ଥେ ନିତ୍ୟେ କୁପଥେ ଗମଇ ॥
ବାହ୍ୟ ଆଡ଼ମ୍ବରେ ବେଶ ହୁଅଇ ନିରତ ।
ବୃଥା ସୌନ୍ଦର୍ଯ୍ୟ ରୂପରେ ହୁଅଇ ମୋହିତ ॥
କାମବିବର୍ଦ୍ଧକ ଦ୍ରବ୍ୟ କରଇ ଆହାର ।
ନାନାବ୍ୟସନେ ରଞ୍ଜିତ ହୁଏ ତା ଅନ୍ତର ॥
ମୈଥୁନକାର୍ଯ୍ୟରେ ସଦା ରହେ ତତପର ।
ସୁଜ୍ଞାନ ପଦ କେବେଁ ତା ନୁହଇ ଗୋଚର ॥
କାମଗୁଣ ପ୍ରବୃତ୍ତି ଅଟେ ଅତି ଅନିବାର୍ଯ୍ୟ ।
ନିର୍ବୋଧ ଜନକୁ କାମ କରଇ ଦାହ୍ୟ ॥
ଘୋର ନରକରେ ନେଇ କରାଏ ପତନ ।
ଆତ୍ମା ବିବେକର ଆଉ ନ ରହେ ଚେତନ ॥
କାମକୁ ଆୟତ୍ତ କର ସୁଜ୍ଞାନ ବୁଦ୍ଧିରେ ।
ବିମୋହିତ ନୁହ କେବେଁ କ୍ଷଣିକ ଭୋଗରେ ॥
କାମ ଉଦ୍ରେକରେ ଦୁଃଖ ହୁଏ ଅପ୍ରମିତ ।
ଆତ୍ମାର ଯଥାର୍ଥ ସୁଖ ନୁହଇ କଥିତ ॥
ଶୁକ୍ରକ୍ଷୟୁ ଦୁଃଖ ଜାତ ହୁଅଇ ହୃଦରେ ।
ପ୍ରଜ୍ଞା ବିନଷ୍ଟ ହୁଅଇ ଶୀଘ୍ର ପ୍ରମୋଦରେ ।୫୦।
କାମକୁ ବଶିତ କର ଯୋଗ ଲକ୍ଷ୍ୟାଙ୍ଗରେ ।
ନିଷ୍ଠା ଭକତି ସାଧନ ସୁଅନୁମାନରେ ॥
କ୍ରୋଧ-ଶତ୍ରୁ ହୃଦେ ଅସି ହେଲେ ଉପଗତ ।
ସଞ୍ଚିତ ଧର୍ମ ସକଳ ହୁଏ ନିବାରିତ ॥
ବହୁ କଷ୍ଟେ ପ୍ରାଣୀ ଅର୍ଜ୍ଜଥାଏ ତପଗୁଣ ।
ନିମିଷକେ କ୍ରୋଧ ତାହା କରଇ ବିନାଶ ॥

ଜ୍ଞାନ ଅଜ୍ଞାନ ହୃଦରେ ବାରଣ ନ ରହେ ।
ମନ ବଚନ ନୟନ ପ୍ରଜ୍ୱଳନ୍ତ ହୋଇଥାଏ ॥
ବୈକୁଣ୍ଠ ସ୍ଥାନ ପର୍ଯ୍ୟନ୍ତ କରଇ ଅଘାତ ।
କ୍ରୋଧାନଳ ସର୍ବାଙ୍ଗକୁ କରେ ଜର୍ଜରିତ ॥
ଉତ୍ଥାନ ପତନ ହୁଏ ବିମର୍ଷ ବଦନେ ।
ଅନୁଚିତ ବାକ୍ୟମାନ ଭାଷଇ ବଚନେ ॥
ପିତା ପୁତ୍ର ଗୁରୁ ଶିଷ୍ୟ ଭେଦ ନ ବିଚାରେ ।
କ୍ରୁର ବଚନ ଭାଷଇ ସର୍ବ ସମ୍ମୁଖରେ ॥
ପ୍ରାଣନାଶ ପର୍ଯ୍ୟନ୍ତେ କ୍ରୋଧ ହୁଏ ଜାତ ।
କ୍ରୋଧୀ ବ୍ୟକ୍ତି ସ୍ୱ-ସ୍ୱଭାବେ ସ୍ୱୟଂ ହୁଏ ହତ ॥
ଅକ୍ରୋଧ ସାଧୁଭାବରେ କ୍ରୋଧକୁ ନିବାର ।
ସୁଶାନ୍ତି ପଦକୁ ହୃଦେ କର ଯେ ସୁସ୍ଥିର ॥
କ୍ଷମାଗୁଣେ କ୍ରୋଧିବାକ୍ୟ କରିବ ସହନ ।
ପୌରୁଷଶକ୍ତିରେ ସଦା ହୋଇବ ନିମଗ୍ନ ।୭୦।
କାମ କ୍ରୋଧ ଜୟ କଲେ ଶୁଦ୍ଧ ସ୍ୱଭାବେ ।
ସୁଶାନ୍ତିପଦ ପ୍ରାପତ ହୋଇବ ସହଜେ ॥
ଲୋଭଗୁଣ ହୃଦେ ରହିଥିଲେ ବିଦ୍ୟମାନ ।
କାମ କ୍ରୋଧକୁ ନ କରି ପାରେ ସେ ଲଙ୍ଘନ ॥
ଲୋଭ ସର୍ବ ସଦ୍‌ଗୁଣକୁ କରେ ଅପୂଜିତ ।
ସାତ୍ତ୍ୱିକ ଦାନ ବିଷୟେ ହୁଅଇ କୁଣ୍ଠିତ ॥
ସ୍ୱ-ଉଚିତ ବାକ୍ୟ କାର୍ଯ୍ୟେ ନ କରେ ପାଳନ ।
କୃପଣଭାବେ ସଞ୍ଚୟ କରୁଥାଏ ଧନ ॥
ଧର୍ମସଭା ମଧ୍ୟେ ବାକ୍ୟ ନ କହେ ସରଳ ।
ଲୋଭ ପ୍ରବଞ୍ଚନେ ବୁଦ୍ଧି ହୁଅଇ ଜଟିଳ ॥

ଅସତ୍ୟ ବଚନ ସଦା କରଇ ଅଭ୍ୟାସ ।
ବିଲକ୍ଷିତ କର୍ମପଥେ ହୁଅଇ ପ୍ରବେଶ ॥
ନିରନ୍ତରେ ବାଞ୍ଛା କରେ ଧନ ସମ୍ପଦକୁ ।
ଜ୍ଞାନ ଧର୍ମ ଅର୍ଜନରେ ଘୃଣଇ ପଛକୁ ॥
ସାଧୁ ଅତିଥି ସତ୍‌ପାତ୍ରେ ନ କରଇ ଦାନ ।
ସ୍ୱାର୍ଥରେ ସଞ୍ଚିତ କରଇ ନିଜ ଧନ ॥
କାମ କ୍ରୋଧ ଲୋଭଭାବେ ହୋଇଣ ଜଡ଼ିତ ।
ଆତ୍ମଜ୍ଞାନ ପଦରୁ ସେ ହୁଅଇ ବଞ୍ଚିତ ॥
ନିର୍ଲୋଭ ହୋଇ କରିବ ଅତିଥି ସତ୍କାର ।
ଉଚିତ ବ୍ୟୟରେ କେଭେଁ ନ ହେବ କାତର । ୭୦ ।
ଅନ୍ୟର ବିତ୍ତ ସମ୍ପଦେ ନ କରିବ ଆଶ ।
ଆଶାୟୀ ହୋଇ ଅର୍ଥର ନ ହୋଇବ ଦାସ ॥
ଲୋଭ କ୍ଷୟ ହେଲେ ଆତ୍ମା ହୁଏ ସଂପୂଜିତ ।
କାମକ୍ରୋଧର ଅଧୀନ ନ ହୁଏଟି ଚିତ୍ତ ॥
ମୋକ୍ଷପଦ ତାହା ପକ୍ଷେ ଅଟେ ବିଡ଼ମ୍ବନା ।
ଅନିତ୍ୟ ବସ୍ତୁକୁ ସଦା କରେ ଯେ ଭାବନା ॥
ମୋର ପୁତ୍ର, ମୋର ମିତ୍ର, ମୋର ତାତ ମାତ ।
ମୋର ପତ୍ନୀ, ମୋର ଗୃହ, ମୋର ଏହି ବିତ୍ତ ॥
ଏହିରୂପେ ମୋର ମୋର ଭାବଇ ସର୍ବସ୍ୱ ।
ସ୍ୱ ଆତ୍ମାକୁ କେବେ କରି ନ ପାରେ ନିଜସ୍ୱ ॥
ମୋହ ଅନ୍ଧାର କରାଏ ନରକେ ପ୍ରବେଶ ।
କାମ କ୍ରୋଧ ଲୋଭଗୁଣେ ହୋଇଣ ନୀରସ ॥
ମନ ମୋହକାରୀ କେହି ସଙ୍ଗେ ନ ଗମନ୍ତି ।
ମୃତ୍ୟୁକାଳ ପରଯନ୍ତେ ସମସ୍ତେ ଖଟନ୍ତି ॥

ଲୋଭ ମୋହ ଭାବ କର ହୃଦୟୁଁ ବର୍ଜନ ।
ପରମାତ୍ମାଙ୍କୁ ମନରେ କରିବ ଭାବନ ॥
ସଜୀବ ନିର୍ଜୀବ ଯେତେ ଦୃଶ୍ୟବସ୍ତୁ ଅଛି ।
ମୋହର ଏହି ସଂସାରେ କେ ନୁହନ୍ତି କିଛି ॥
ଯେ ଯାହାର କର୍ମ ଧରି ହୋନ୍ତି ଚଳାଚଳ ।
ପଥିକ ଜନ ପରାୟେ ହୋଇଛନ୍ତି ମେଳ ।୮୦।
ଭବ ସମୁଦ୍ରରେ ଭାସିଯାନ୍ତି ଜୀବଗଣ ।
କର୍ମାନୁରୂପେ ଲଭନ୍ତି ଜନମ ମରଣ ॥
ଜଗତର କର୍ତ୍ତା ଏକା ପରମ ଈଶ୍ୱର ।
ତାହାଙ୍କ ଅଜ୍ଞାରେ ଚଳୁଅଛି ଏ ସଂସାର ॥
ସେହି ଏକା ମୋହର ଅଟନ୍ତି ପ୍ରାଣପତି ।
ତାହାଙ୍କ ବ୍ୟତୀତ ନ ମିଳଇ ସଦଗତି ॥
ଏହି ରୂପ ଭାବ ମୋହ ମାୟା କର ଦୂର ।
କାମ କ୍ରୋଧ ଲୋଭ ସର୍ବେ ହୋଇବେ କିଙ୍କର ॥
ମଦ ପ୍ରମୋଦ ଅଟଇ ଅତି ବଳୀୟାନ ।
ରିପୁଗଣଙ୍କୁ ସର୍ବଦା କରେ ଉତ୍ତେଜନ ॥
ଧନ ଜନ ଯଉବନ ଜାତି ବିଦ୍ୟା ରୂପ ।
ଏହି ଗର୍ବରୁ ଉପୁଜେ ମଦ ମହାକୋପ ॥
ମନରୁ ସର୍ବଦା ଗର୍ବଭାବ ତ୍ୟାଗ କର ।
ଗୁରୁଭକତିରେ ବହିଥିବ ଅନୁସର ॥
ଧନାଢ୍ୟ ବିଷୟେ ନ ହୋଇବ ଅଭିମାନୀ ।
ନିରନ୍ତରେ ସେବା କରୁଥିବ ତତ୍ତ୍ୱଜ୍ଞାନୀ ॥
ମଦ ମହାଦୋଷ ନ କରିବ ଆକ୍ରମଣ ।
କାଳର ଗତିକୁ କରୁଥିଲେ ଅନୁଧ୍ୟାନ ॥

ମାତ୍ସର୍ଯ୍ୟ ଅଟଇ ପଚ୍ଚଶିରିପୁ ଭଟ୍ଟାରା ।
ମନ ମଧ୍ୟରେ ଜନ୍ମାଏ ଅତି ଅକୁଳତା ।୯୦।
ଅନ୍ତରେ ଭାବନା କରୁଥାଇ ନିରନ୍ତରେ ।
ଅନ୍ୟର ସୁଯଶ ଗୁଣ ଭଙ୍ଗ ଉଦ୍ଦେଶ୍ୟରେ ॥
ଧର୍ମର ଶ୍ରେଷ୍ଠ ପଦକୁ କରଇ ଲଙ୍ଘନ ।
ସ୍ୱଗୁଣ ପ୍ରତିଷ୍ଠା ପାଇଁ ହୁଅଇ ଅଜ୍ଞାନ ॥
ଅସୂୟାଦ ରିପୁଗଣେ ହୋଇଣ ଅଧୀନ ।
ସାଧୁଜନଙ୍କୁ ସର୍ବଦା କରଇ ନିନ୍ଦନ ॥
ଗୁଣେ ଦୋଷ, ଦୋଷେ ଗୁଣ ମିଶ୍ରିତ କରଣ ।
ମିଥ୍ୟା ପ୍ରବଞ୍ଚନା ବାକ୍ୟ ଭାଷେ ଅନୁକ୍ଷଣ ॥
ସର୍ବ ରିପୁଗଣ ଆସି ହୁଅନ୍ତି ଏକତ୍ର ।
ନାନା କୁତ୍ସିତ କର୍ମରେ କରାନ୍ତି ଜଡ଼ିତ ॥
ସାଧୁଙ୍କୁ ଅସାଧୁଭାବେ, ଅମନ୍ଦଙ୍କୁ ମନ୍ଦ ।
ନିନ୍ଦେ ସବୁ ସୁଜ୍ଞାନୀଙ୍କୁ ହୋଇ ମୋହେ ଅନ୍ଧ ॥
ରାଗ ଦ୍ୱେଷରେ ସର୍ବଦା ହୋଇଣ ମଜ୍ଜିତ ।
ଦେହାନ୍ତେ ନରକ ମଧ୍ୟେ ହୁଏ ଉତ୍ପୀଡ଼ିତ ॥
ମାତ୍ସର୍ଯ୍ୟ ଦୋଷକୁ ଯିହୁଁ ଚେତିଲେ ତ୍ୱରିତ ।
ସଜ୍ଜନ ସଙ୍ଗରେ ପ୍ରୀତି ହୁଅଇ ବର୍ଦ୍ଧିତ ॥
ବର୍ଦ୍ଧିତ ହୁଅଇ ଧର୍ମ ଶ୍ରେଷ୍ଠରେ ଜୀବନ ।
ସ୍ପର୍ଶ କରି ନ ପାରଇ କାମିନୀ କାଞ୍ଚନ ॥
ଜୀବହିଂସା ଚୌର୍ଯ୍ୟ ପରଦାର ପାପାଗାର ।
କୁକର୍ମ ମଧ୍ୟରେ ଏହୁ ଅତି ବଳୀୟାର ।୧୦୦।
ରିପୁଗଣର ଅଧୀନ ହୋଇ ପ୍ରାଣିଗଣ ।
ନିରତେ କରନ୍ତି ଏହୁ ପାପ ଆଚରଣ ॥

ସ୍ୱଦେହେଁ ଲଭନ୍ତି ଦୁଃଖ, ଜନ୍ମାନ୍ତରେ ଦୁଃଖ ।
ନୀଚ ଯୋନିରେ ଜନମି ନ ଲଭନ୍ତି ସୁଖ ॥
ମହାରୌରବନର୍କରେ ହୁଅନ୍ତି ପତିତ ।
କର୍ମର ଫଳକୁ କରି ନ ପାରି ଖଣ୍ଡିତ ॥
ରିପୁଗଣଙ୍କର ଦୋଷ ହୋଇ ଅବଗତ ।
ଶରୀର ମନ ବାକ୍ୟକୁ ନିବାର ତୁରିତ ॥
ଚିତ୍ତ ସୁନିର୍ମଳ ଭାବେ ହେବ ପ୍ରକାଶିତ ।
ଚିନ୍ମୟ ଚିନ୍ତନଯୋଗେ ହେବ ଉଲ୍ଲସିତ ॥
ଚିନ୍ମୟ ଭାବନେ ଚିତ୍ତ ରଖି ଅନୁକ୍ଷଣ ।
ଅହିଂସା ମହାବ୍ରତକୁ କରିବ ପାଳନ ॥
କାୟମନୋବାକ୍ୟରେହିଁ ନ କରିବ ହିଂସା ।
ମୁଖେ ଉଚ୍ଚାରଣ କରୁଥିବ ସତ୍ୟ ଭାଷା ॥
ପରମାତ୍ମା ସର୍ବଭୂତେ ଛନ୍ତି ବିଦ୍ୟମାନ ।
ତାହାଙ୍କ ଆଭାରେ ସର୍ବେ ହୁଅନ୍ତି ଚେତନ ॥
କାହାର ଅନିଷ୍ଟ ଚିନ୍ତା କେବେହେଁ ନ କରିବ ।
ପ୍ରବୃତ୍ତି ପାଳନ କରି କାଳ କଟାଇବ ॥
ଜୀବହିଂସା କର୍ମେ ନ କରିବ ସହଯୋଗ ।
ହିଂସା ପ୍ରବୃତ୍ତିକୁ ନିତ୍ୟେ କର ପରିତ୍ୟାଗ ।୧୧୦।
ସତ୍ୟପଦ ଆଶ୍ରୟ କରିବ ନିରନ୍ତର ।
ସତ୍ୟ ସ୍ୱରୂପ ଅଟନ୍ତି ପରମ ଈଶ୍ୱର ॥
ସତ୍ୟ କ୍ରିୟା ସର୍ବଦା କରିବ ଅନୁଷ୍ଠାନ ।
ନିରନ୍ତରେ ଭାଷୁଥିବ ସୁସତ୍ୟ ବଚନ ॥
ମନ ମଧ୍ୟରେ କରିବ ସତ୍ୟାନୁସନ୍ଧାନ ।
ବୃଥା କ୍ରିୟା ବୃଥାଳାପ ତେଜିବ ବହନ ॥

ବୃଥା ଶନ୍ଦା ବାଦ ନ କରିବ ପରସ୍ପର ।
ସତ୍ୟ ପକ୍ଷପାତୀ ହୋଇଥିବ ନିରନ୍ତର ॥
ମିଥ୍ୟା ପାପାଦ କୁଅଶା ତେଜିଲେ ହୃଦରୁ ।
ସତ୍ୟ ବାକ୍ୟରେ ପ୍ରସନ୍ନ ହୁଅନ୍ତି ସଦ୍‌ଗୁରୁ ॥
ପରର ବିତ୍ତ ହରଣେ ନ କରିବ ମନ ।
ନ୍ଲେଚ୍ଛବତ ବିଗ୍ରହ କରିବ ସର୍ବ ଜନ ॥
ନିଜ ଦ୍ରବ୍ୟ ସକଳ ସମର୍ପି ଗୁରୁପାଦେ ।
ଅସ୍ତେୟ ପଦେ ପ୍ରବେଶ ହୋଇବ ଆନନ୍ଦେ ॥
ମାତୃ ଭଗ୍ନୀ ପ୍ରାୟେ ପରଦାରଙ୍କୁ ଦେଖିବ ।
ବ୍ରହ୍ମଚର୍ଯ୍ୟେ ରହି ରେତ କ୍ଷୟ ନ କରିବ ॥
ଅଷ୍ଟବିଧ ଯେ ମୈଥୁନ କରି ପରିତ୍ୟାଗ ।
ଆଶ୍ରମ ନିୟମ ମତେ ହୋଇବ ସଂଯୋଗ ॥
ବ୍ରହ୍ମଚର୍ଯ୍ୟ ତେଜେ ହୃଦ ହେଲେ ଦୃଢ଼ୀଭୂତ ।
ବ୍ରହ୍ମ ସ୍ମରଣରେ ସଦା ରହେ ବୁଦ୍ଧି ଚିତ୍ତ । ୧୨୦ ।
ଜୀବ ପ୍ରତି ଦୟା କରୁଥିବ ପ୍ରତି ନିତ ।
କାହାର ମନରେ ନ ଘଟାଇବ ଅଶାନ୍ତି ॥
ନିଜ ଚିତ୍ତକୁ ରଖିବ ସର୍ବଦା ସରଳ ।
କ୍ଷମାପଦରେ କେବେହେଁ ନ ହେବ କୁଟିଳ ॥
ଜିହ୍ୱା ଉପସ୍ଥର ନିତ୍ୟ ସଂଯମନ କରି ।
ଧୃତିପଦରେ ସୁଦକ୍ଷ ହେବ ବ୍ରହ୍ମଗୃହୀ ॥
ବିଶୁଦ୍ଧ ଆହାର୍ଯ୍ୟ ଦ୍ରବ୍ୟ କରିବ ଭୋଜନ ।
ସୂର୍ଯ୍ୟାସ୍ତ ହୋଇଲେ ନ କରିବ ଭକ୍ଷ ପାନ ॥
ରାତ୍ରଭୋଜନରେ ହୁଏ ବ୍ରହ୍ମଚର୍ଯ୍ୟ ନଷ୍ଟ ।
କାମ କ୍ରୋଧ ରିପୁଗଣ ହୁଅନ୍ତି ବଳିଷ୍ଠ ॥

ଶୟନ ନିଦ୍ରାରେ ଘଟେ ନାନା ସ୍ୱପ୍ନଦୋଷ ।
ଢକ୍କିତ ଇନ୍ଦ୍ରିୟଗଣ ନ ହୁଅନ୍ତି ବଶ ॥
ମାୟା ପ୍ରମୋଦରେ ଶତ୍ରୁ ହୁଅଇ ଧାବିତ ।
ଜ୍ଞାନ ଭକତି ସାଧନେ ନ ରହେ ନିରତ ॥
ବ୍ରାହ୍ମ ମୁହୂର୍ତ୍ତିରେ ହୋଇ ନ ପାରେ ଜାଗ୍ରତ ।
ସର୍ବ ଭୋଜନରେ ଦୋଷ ହୁଏ ଅପ୍ରମିତ ॥
ଅଧ୍ୟୁବପ୍ଲୁକ୍ତ ଲୋକ ଭୁଞ୍ଜଇ ସର୍ବରେ ।
ଅହାର ନିଦ୍ରା ମୈଥୁନ ବାରଣ ନ କରେ ॥
ଦିବସ ଭୋଜନ କର୍ମ କରଇ ସର୍ବରେ ।
ନିଶାର ପିଶାଚ କର୍ମ କରେ ଦିବସରେ ।୧୩୦।
ଜ୍ଞାନୀମାନଙ୍କର ଯାହା ଅଟେ ସମୁଚିତ ।
ଅଜ୍ଞାନୀଏ ତାହାର କରନ୍ତି ବିପରୀତ ॥
ଜ୍ଞାନୀମାନେ ଶୁଭଫଳ ହୁଅନ୍ତି ପ୍ରାପତ ।
ଅଜ୍ଞାନୀମାନେ ଅଶୁଭେ ହୁଅନ୍ତି ପତିତ ॥
ରାତ୍ରିଭୋଜନର ଦୋଷ ହୋଇ ଅବଗତ ।
ନିଶାରେ ଭୋଜନ ନ କରିବ କଦାଚିତ ॥
ସାୟଂକାଳ ଠାରୁ ପ୍ରାତଃକାଳ ପର୍ଯ୍ୟନ୍ତେ ।
ଚତୁର୍ବିଧ ଅହାରକୁ ନ ଭୁଞ୍ଜିବ ସନ୍ତେ ॥
ଦିବସରେ ସୂର୍ଯ୍ୟାସ୍ତେ କରିବ ଭୋଜନ ।
ସୂର୍ଯ୍ୟାସ୍ତରେ କେବେଁ ନ କରିବ ଜଳପାନ ॥
ବାମ ଇଡ଼ା ନାଡ଼ୀ ଜାଗ୍ରତରେ ଗୃପ ଧରି ।
ପିଙ୍ଗଳା ନାଡ଼ୀରେ ବାୟୁ ପ୍ରବାହିତ କରି ॥
ସାତ୍ତ୍ୱିକଭାବରେ ଯାହା ହୋଇବ ପ୍ରାପତ ।
ପରଂବ୍ରହ୍ମଙ୍କୁ ଅରପି ଭୁଞ୍ଜିବ ନିୟତ ॥

ପରିମିତ ଭାବେ ଅନ୍ନ କରିବ ଭୋଜନ ।
ତଦନୁରୂପେ ନିର୍ମଳ ଜଳ କରି ପାନ ॥
ରାଜସ ତାମସ ଆହାର ଯେ ନ କରିବ ।
କେଶକୀଟଯୁକ୍ତ ଅନ୍ନ ଦୂରରୁ ତେଜିବ ॥
ଦେବଦେବୀ ଅର୍ପିତ ପଦାର୍ଥମାନ ଯେତେ ।
ହସ୍ତରେ ସ୍ପର୍ଶ ନ କରିବ କଦାଚିତେ ॥୧୪୦॥
ମଦ୍ୟ ମାଦକ ଯେ ତାମ୍ବୁଳାଦି ଦ୍ରବ୍ୟମାନ ।
ଯତନରେ ସେ ସମସ୍ତ କରିବ ବର୍ଜନ ॥
ବିଶୁଦ୍ଧ ଚିତ୍ତରେ କଲେ ସାତ୍ତ୍ୱିକ ଭୋଜନ ।
ପ୍ରାଣ ଅଗ୍ନିହୋତ୍ରକ୍ରିୟା ହୁଏ ସମ୍ପାଦନ ॥
ଭୋଜନାନ୍ତେ କରପଦ୍ମ ଯୋଡ଼ି ଭକ୍ତ ହୋଇ ।
ଅଭ୍ୟସ୍ତୁ ପାଦପଦ୍ମଙ୍କୁ ମନମଧ୍ୟେ ଧ୍ୟାୟି ॥
'ଜଗତ ପ୍ରାଣୀମାନଙ୍କ ମିତ୍ର ସଦା ଅନ୍ନ ।
ଅନ୍ନର ଭଣ୍ଡାର ଜଗତରେ ବହୁ ପୂର୍ଣ୍ଣ ॥'
ଏହିରୂପ ଜଣାଣ କରିବ ପ୍ରଭୁଠାରେ ।
ମିତ ଆହାରରେ ଦୋଷ ନ ରହେ ଅନ୍ତରେ ॥
ଚିନ୍ମୟ ସ୍ମରଣେ ଚିତ୍ତ ରହେ ଜାଗରତ ।
ବିଷୟଦୋଷରେ କେବେଁ ନୁହେ ବଶୀଭୂତ ॥
ପବିତ୍ର ରଖିବ ସଦା ନିଜ ଶରୀରକୁ ।
ବିଶୁଦ୍ଧ କରିବ ମନ ଇନ୍ଦ୍ରିୟଗଣକୁ ॥
ପ୍ରତିନିତ୍ୟ ପ୍ରାତଃ ବ୍ରାହ୍ମ ମୁହୂର୍ତ୍ତର କାଳେ ।
ଅବଗାହନ ସ୍ନାହାନ କରି ଶୁଦ୍ଧଜଳେ ॥
ସର୍ବ ଶେଷଯାମ ବିଣ୍ମୂତ୍ରାଦି କରି ତ୍ୟାଗ ।
ବ୍ରହ୍ମ ସ୍ମରଣରେ ଅଦ୍ୟେ ହୋଇବ ନିୟୋଗ ॥

ବିଶୁଦ୍ଧ ମୃତ୍ତିକା ଜଳେ ଦନ୍ତ ସମ୍ମାର୍ଜିଣ ।
ବସ୍ତ୍ରତରୀର ଗୋମୟ ଅଙ୍ଗେ ଲଗାଇଣ ।୧୫୦।
ଜଳମଧ୍ୟରେ ପ୍ରବେଶ ହୋଇ ତତକ୍ଷଣ ।
ଶରୀର ଅଙ୍ଗ ପ୍ରତ୍ୟଙ୍ଗ କରିବ ମାର୍ଜ୍ଜନ ॥
ସୁଚିତ୍ତରେ ସ୍ନାନ ସାରି ଜଳର ମଧ୍ୟରେ ।
ପବିତ୍ର ଗୈରିକ ବସ୍ତ୍ର ପିନ୍ଧିବ ସତ୍ୱରେ ॥
ପବିତ୍ର ଜଳରେଣୁକୁ କରରେ ଧରିବ ।
ଗୁରୁ ଆଜ୍ଞା ବିଧାନରେ ଯତ୍ନରେ ପାଇବ ॥
ତଦନ୍ତେ କରିବ ପରଂବ୍ରହ୍ମଙ୍କ 'ଦର୍ଶନ' ।
ପ୍ରପଞ୍ଚ ବିଷୟ ଭେଦେଁ ନ ଭାବିବ ମନ ॥
ବାହ୍ୟ ଅଭ୍ୟନ୍ତର ଶୌଚ ହୁଅଇ ଶରୀର ।
କୁବାସନା ହୃଦୟରୁ ହୋଇଯାଏ ଦୂର ॥
ଶରୀରରେ ନବ ଛିଦ୍ର ହୋଇଛି ସଂଯୁକ୍ତ ।
ସନଦିବା ମଳ ତହୁଁ ହୁଅଇ ସ୍ରବିତ ॥
ଦୁର୍ଲ୍ଲଭ ଦେହକୁ କରେ ଅତ୍ୟନ୍ତ ମଳିନ ।
ନିଦ୍ରାଗତରେ ହୁଅଇ ନାନାଦି ଦୁଃସ୍ୱପ୍ନ ॥
ଅରୁଣୋଦୟ ପୂର୍ବରୁ କରିଲେ ସ୍ନାହାନ ।
ପୂର୍ବ ସବୁ କୃତ ଦୋଷ ହୋଏ ବିନାଶନ ॥
ସର୍ବଦା ପବିତ୍ର ଭାବେ ରହଇ ଶରୀର ।
ମେଧାଦି ଶକ୍ତି ସମ୍ପନ୍ନ ହୁଅଇ ଅନ୍ତର ॥
ରୂପ ପୁଷ୍ଟି ତେଜ ଆୟୁ ବଢ଼େ ଦିନୁଦିନ ।
ସାଧୁତା ଭାବରେ ଚିତ୍ତ ବଢ଼େ ଅନୁକ୍ଷଣ ।୧୬୦।
ମନ ଚଞ୍ଚଳ ନ ହୋଇ ହୁଅଇ ଏକାଗ୍ର ।
ସ୍ଥୂଳସୂକ୍ଷ୍ମ ଦେହ ସର୍ବ ଲଭଇ ଆରୋଗ୍ୟ ॥

ଶୌଚ ଧର୍ମନୀତି ନିତ୍ୟ କରିବ ପାଳନ ।
ଶଉ ସଂଯମରେ 'ଯମ' ହୁଅଇ ସାଧନ ॥
ଅବିବେକୀ ଅତ୍ୟାଗ୍ରହୀ ଅଜ୍ଞ ଲୋକଗଣ ।
ଶୌଗୃଦ ଧର୍ମନୀତିକୁ କରନ୍ତି ଲଙ୍ଘନ ॥
ଯଥାନିୟମରେ କର ନିୟମ ସାଧନ ।
କାୟମନୋବାକ୍ୟେ ପାପ କରିଣ ବର୍ଜନ ॥
ସ୍ୱଧର୍ମର ଅନୁଷ୍ଠାନ କରିଣ ନିରତ ।
ଅନ୍ୟାନ୍ୟ ଧର୍ମମାର୍ଗରେ ନ ହେବ ଚନ୍ତ୍ରତ ॥
ତପସ୍ୱୀଭାବେ ସନ୍ତୁଷ୍ଟ ରହି ଅନୁକ୍ଷଣ ।
ଲାଭାଲାଭ ବିଷୟରେ ହେବ ସମଜ୍ଞାନ ॥
ସର୍ବ କାରଣ କରତା ପରମ ଈଶ୍ୱର ।
ଏହିଭାବେ ଭାବନା କରିବ ନିରନ୍ତର ॥
ନାସ୍ତିକ ଜନର ସଙ୍ଗେ ନ କରିବ ବାସ ।
ଆସ୍ତିକ ପଦରେ ସଦା ରଖିବ ବିଶ୍ୱାସ ॥
ନିନ୍ଦକ ବଞ୍ଚକ ଧୂର୍ତ୍ତ ଖଳ ପାପିଜନ ।
ଏହାଙ୍କ ସଙ୍ଗତେ ବାସ ନ କର ସୁଜନ ॥
ସତ୍ୟପ୍ରିୟ ବଚନ କହିବ ନିରନ୍ତରେ ।
ସାତ୍ତ୍ୱିକ ଦାନ କରିବ ଯଥୋକ୍ତ କାଳରେ ।୧୬୦।
ପରମାତ୍ମା ପୂଜନୀୟ ଅଟନ୍ତି ଆମ୍ଭର ।
ତାଙ୍କ ଅର୍ଚ୍ଚନା ପ୍ରତି ରହିବ ତତ୍ପର ॥
ସୁଶାସ୍ତ୍ର ସିଦ୍ଧାନ୍ତ ବାକ୍ୟ କରିବ ଶ୍ରବଣ ।
ତର୍କ ପାଷଣ୍ଡ ଶାସ୍ତ୍ରକୁ ତେଜିବ ବହନ ॥
ନିନ୍ଦିତ କାର୍ଯ୍ୟରେ କେବେ ନ ହେବ ପ୍ରବୃତ୍ତ ।
କୁକର୍ମ ସ୍ମରଣେ ସଦା ହୋଇବ ଲଜ୍ଜିତ ॥

ମତ୍ତମାନ ହୋଇ ନିତ୍ୟେ ନିର୍ମଳ ରହିବ ।
ନିଶ୍ଚଳରେ ପ୍ରଭୁ ପାଦେ ଲୟ ରଖିଥିବ ॥
ଏହି ସମସ୍ତ ନିୟମ କଲେ ଆଚରଣ ।
ଚିତ୍ତ ଏକାଗ୍ର ହୋଇଣ ହୁଏ ସଂଯମନ ॥
ଏକବ୍ରହ୍ମନିଷ୍ଠ ହୋଇ ରହେ ସଦା ମତ୍ତ ।
ସେହି ନିଷ୍ଠାଭକତରେ ମିଳଇ ପ୍ରଶାନ୍ତି ॥
ଅହିଂସାଦି କର୍ମେ ଯାର ଚିତ୍ତ ସ୍ଥିର ନୁହେ ।
ହିଂସା କୁବିଦ୍ୟାଦି ଯାର ହୃଦୟରେ ରହେ ॥
ବିଷୟବାସନା ବଶେ ହୁଏ ସେ ଅବଦ୍ଧ ।
ବାସ୍ତବ କରି ନ ପାରେ ବିଧି ବା ନିଷେଧ ॥
ସେହି ଲୋକଗଣ ସର୍ବ ନିରୟ ମଧ୍ୟରେ ।
ସନ୍ତପ୍ତ ହୁଅନ୍ତି ସଦା ନର୍କଯାତନାରେ ॥
ଯେଉଁମାନଙ୍କର ଚିତ୍ତ ଅଟଇ ଏକାଗ୍ର ।
ସାଧନ କରନ୍ତି ନିତ୍ୟ ଜ୍ଞାନ-ଭକ୍ତି-ମାର୍ଗ ॥
ଯେଉଁମାନେ ଆଶ୍ରୟ କରନ୍ତି ପରଂବ୍ରହ୍ମ ।
ସେହିମାନେ ଲଭନ୍ତି କେବଳ ପରଧାମ ॥
ତ୍ରିତାପରେ ତାପିତ ନୁହନ୍ତି ସେହିମାନେ ।
ନିଶ୍ଚିନ୍ତ ବସନ୍ତି ଯାଇ ଅଭୟ ଚରଣେ ॥
ଚିତ୍ତ ଏକାଗ୍ରତା ଯଦି ହୁଅଇ ସ୍ଖଳନ ।
ଚିନ୍ମୟ ଜ୍ୟୋତିକୁ କରି ନ ପାରେ ଚିନ୍ତନ ॥
ପ୍ରାଣ ପ୍ରବିନ୍ଦ୍ରିୟର ହେତୁ କରିବ ଦମନ ।
ଅଷ୍ଟାଙ୍ଗ ଯୋଗ ଯେ ରୀତି ସମାଧି ସାଧନ ॥
ଶାସ୍ତ୍ରେ ବହୁବିଧ ଯୋଗ ହୋଇଛି ବର୍ଣ୍ଣନ ।
ମନ୍ତ୍ର, ଲୟ, ହଠ, ରାଜଯୋଗ ଆଦି ଜାଣ ॥

ଅଧମ ସାଧକ ଯେହୁ ଅଳ୍ପବୁଦ୍ଧି ନର ।
ମନ୍ତ୍ରଯୋଗ ସାଧନ କରଇ ନିରନ୍ତର ॥
ସଗୁଣ ଐଶ୍ୱର୍ଯ୍ୟ ପଦ ହୁଏ ସେ ପ୍ରାପତ ।
ନିର୍ଗୁଣ ପଦରେ ହୋଇ ନ ପାରେଟି ସ୍ଥିତ ।
ଲୟ ଯୋଗେ ଚିତ୍ତବୃତ୍ତି ବିଷୟ ଯେ ଲୟ ।
ଅଣୁସ୍ଥ ପଦରେ ଧ୍ୟାନ କରେ ସୁନିଶ୍ଚୟ ॥
ହଠ ପଦ ଅଟେ ଜୀବ ପରମର ଐକ୍ୟ ।
ଯୋଗ ଅଷ୍ଟବିଧ ଭାବେ ହୁଅଇ ପାର୍ଥକ୍ୟ ॥
ଯମ, ନିୟମ, ଆସନ ତଥ ପ୍ରାଣାୟାମ ।
ପ୍ରତ୍ୟାହାର, ଧାରଣା, ଧ୍ୟାନ, ସମାଧି, ସମ ॥
ଯମ, ନିୟମ ବୃତ୍ତାନ୍ତ ହୋଇଛୁ ବର୍ଣ୍ଣନ ।
ବହୁବିଧ ଭାବେ ରହିଅଛୁ ଯୋଗାସନ ॥
ଉପବେଶନ କରିଲେ ସ୍ଥିର ସୁଖଭାବେ ।
ଆସନ ଜାଣିବ ଭବ ତହିଁରୁ ଉଭବେ ॥
ସିଦ୍ଧ, ପଦ୍ମ, ସ୍ୱସ୍ତିକ, ଯେ ସମ, ବୀରାସନ ।
ଆସନ ମଧ୍ୟରେ ଏହୁ ଅଟଇ ପ୍ରଧାନ ॥
ଦିଗ କାଳ ଲକ୍ଷ୍ୟ କରି ଆସନେ ବସିବ ।
ବନ୍ଧ ମୁଦ୍ରା ଅଭ୍ୟାସରେ ଆରୋଗ୍ୟ ରହିବ ॥
ପ୍ରାଣକୁ କରିବ ଅପାନରେ ସମ୍ପ୍ରଯୁକ୍ତ ।
ପୂରକ, କୁମ୍ଭକ, ରେଚକରେ ସମାସକ୍ତ ॥
ପ୍ରାଣାୟାମ ବିଧିରେ ହୁଏ ମାତ୍ରା ଜପେ ।
ସାଧିତ ହୁଅଇ ବହୁ ଯତ୍ନେ ଅଳପେ ଅଳପେ ॥
ଅଷ୍ଟବିଧ କୁମ୍ଭକରେ କେବଳୀ ଯେ ଶ୍ରେଷ୍ଠ ।
କୁମ୍ଭକ ସିଦ୍ଧିରେ ପ୍ରାଣ ହୁଅଇ ବଳିଷ୍ଠ ॥

ବିଷୟ ରାଜ୍ୟରୁ ଚିତ୍ତ ହୋଇଣ ନିବୃତ୍ତ ।
ପ୍ରତ୍ୟାହାର ପଦେ ଯାଇ ରହେ ନିମଜ୍ଜିତ ॥
ଧାରଣା କରଇ ନିତ୍ୟ ଚିନ୍ମୟ ବ୍ରହ୍ମରେ ।
ତନ୍ମୟ ହୋଇଣ ଧ୍ୟାନ କରେ ନିରନ୍ତରେ ॥
ଆତ୍ମା ଜ୍ୟୋତି ପ୍ରକାଶିଲେ ହୃଦୟ ପଦ୍ମରେ ।
ସମାଧି ସମତାବସ୍ଥା ହୁଏ ଆନନ୍ଦରେ ।୨୦୦।
ନିର୍ଗୁଣ ବ୍ରହ୍ମରେ ଧ୍ୟାନ ରହେ ନିରବଧି ।
ଅଜ୍ଞାନ ଆତ୍ମାକୁ [illegible] ପ୍ରାପ୍ତିରେ [illegible]ଦ ॥
ଚିତ୍ତ ପ୍ରଶାନ୍ତ [illegible] ।
ଭ୍ରମଣ ନ କରେ ପୁଣି ମାୟା ବିଷୟରେ ॥
ନିର୍ବିକଳ୍ପ ସମାଧିରେ ଆତ୍ମା ହେଲେ ସ୍ଥିତ ।
ରାଜଯୋଗ ନାମେ ସେହୁ ଅଟଇ ବିଦିତ ॥
ଆଳସ୍ୟ, ଭୋଗଲାଳସା, ରସ ଆସ୍ୱାଦନ ।
ଚିନ୍ମୟୀ ବୃତ୍ତିର ସଦା ହୋଇଥିବା ଶୂନ୍ୟ ॥
ଲୟ ତମ ବିକ୍ଷେପାନୁସନ୍ଧାନରହିତ ।
ଏହି ସମ୍ପ୍ରଦାୟ ବିଘ୍ନ ହୁଏ ନିବାରିତ ॥
ବିବେକ ବୈରାଗ୍ୟ ହୃଦେ ହୁଏ ପ୍ରଦୀପିତ ।
ତତ୍ତ୍ୱପଦୁଁ ଆତ୍ମା କେବେଁ ନୁହେ ବିଚଳିତ ॥
ଜ୍ଞାନଭକ୍ତିଯୋଗେ ଚିତ୍ତ ଏକାଗ୍ର ହୋଇଲେ ।
ରାଜଯୋଗ ସମାଧି ଯେ ସୁଲଭରେ ମିଳେ ॥
କଠୋର ଯୋଗ ସାଧନେ ନୁହେ ପ୍ରୟୋଜନ ।
ପ୍ରାଣପ୍ରପୀଡ଼ନ କିମ୍ବା ବୃଂହ ସୁଞ୍ଜଜନ ॥
ସ୍ଥିତପ୍ରଜ୍ଞଭାବେ ଆତ୍ମା ରହେ ଅନୁକ୍ଷଣ ।
ଇନ୍ଦ୍ରିୟଗଣ ହୁଅନ୍ତି ଆତ୍ମାର ଅଧୀନ ॥

ଚିତ୍ତ ପ୍ରଶାନ୍ତ ପଦରେ ଲଭଇ ଅମୃତ ।
ପ୍ରଶାନ୍ତ ଯୋଗ ବର୍ଣ୍ଣନ ହୋଇଲା ବର୍ଣ୍ଣିତ ।୨ ୦।

ଇତି ଶ୍ରୀମଚ୍ଚିଦାନନ୍ଦବ୍ରହ୍ମଗୀତାୟାଂ ଚିତ୍ତପ୍ରଶାନ୍ତଯୋଗ ବର୍ଣ୍ଣନେ
ଅସତ୍ ବିଷୟ ପ୍ରବୃତ୍ତି ନିବାରଣେ ଅଜ୍ଞାନ-
ଭୟଖଣ୍ଡନୋ ନାମ ପଞ୍ଚମୋଽଧ୍ୟାୟଃ ।୫।



ଯାହାର ଅନ୍ତର ଅବିଦ୍ୟାରେ ଥାଏ ଗ୍ରସ୍ତ ।
ଇନ୍ଦ୍ରିୟଗଣକୁ କରି ନ ପାରେ ପରାସ୍ତ ॥
ଚିତ୍ତକୁ କଦାଚ କରି ନ ପାରଇ ଜୟ ।
କାମ୍ୟକର୍ମ ଅନୁଷ୍ଠାନେ ହୁଅଇ ଅଥୟ ॥
ରଜ ତାମସ ଗୁଣରେ ହୋଇ ବିମୋହିତ ।
ଅନିତ୍ୟ ସ୍ୱର୍ଗଫଳକୁ ଭାବଇ ନିରତ ॥
ସ୍ୱୟଂ ଧୀର ଜ୍ଞାନୀ ବୋଲି କରଇ ବିଗ୍ରହ ।
ଆତ୍ମଜ୍ଞାନୀ ସାଧୁଙ୍କୁ ସେ ନ କରେ ଆଦର ॥
ଇଷ୍ଟା ପୂର୍ତ୍ତ କର୍ମ କରୁଥାଇ ନିରନ୍ତରେ ।
ପରମ ଶ୍ରେୟ ପଦକୁ ବାଞ୍ଛିତ ନ କରେ ॥
ବେଦ ପ୍ରତିପାଦିତ ବଚନ କର୍ମଫଳାଦିକୁ ।
ଶ୍ରେଷ୍ଠତ୍ୱ ଭାବେ ଭାବଇ ନିରତେ ତାହାକୁ ॥
ଅବିଦ୍ୟାରେ ଅଭିଭୂତ ହୋଇ ମୂଢ଼ଜନ ।
ଅଜ୍ଞାନ କର୍ମପଥରେ କରନ୍ତି ବିଚରଣ ॥

ବିମଳ ଅମ୍ବାତୀର୍ଥକୁ ହୋଇଣ ବିସ୍ମୃତ ।
ଜଳମୟ ସ୍ଥାନକୁ ଭାବଇ ତୀର୍ଥବତ ॥
ସତ୍ୟବ୍ରତ ତେଜି ଦେହ କରଇ ଦହନ ।
ଉପବାସ ବହି ମୋହେ ହୁଏ ନିମଗନ ॥
ଅହିଂସା ପରମଧର୍ମ ନ ଭାବି ଚିତ୍ତରେ ।
ହିଂସାଦି ଯଜ୍ଞକର୍ମକୁ କରଇ ଯତ୍ନରେ ।୧୦।
ମନରେ ଭାବଇ ମୁହିଁ ହୋଇବି କୃତାର୍ଥ ।
ଯଜ୍ଞ ଦାନାଦିରେ ବ୍ୟୟ କରୁଅଛି ଅର୍ଥ ॥
ବେଦ ଅଧ୍ୟୟନ ହେଉଅଛି ମୋ ମନ୍ଦିରେ ।
ବିପ୍ରଗଣ ମନ୍ତ୍ରଧ୍ୱନି କରନ୍ତି ସୁଖରେ ॥
ଅର୍ଥ ଦାନାଦିରେ ତୁଷ୍ଟ ହୋଇ ବିପ୍ରଗଣ ।
ଏକମୁଖ ହୋଇ ସର୍ବେ କରନ୍ତି କଲ୍ୟାଣ ॥
ଅନନ୍ଦରେ ମୁହିଁ ଯିବି ସ୍ୱରଗ ଭୁବନେ ।
କର୍ମଫଳର ଐଶ୍ୱର୍ଯ୍ୟ ଭୁଞ୍ଜିବି ସେ ସ୍ଥାନେ ॥
ଏହିରୂପ ନିରନ୍ତର କରଇ ଭାବନା ।
କେବେହେଁ ବୁଝି ନ ପାରେ କର୍ମ ବିଡ଼ମ୍ବନା ॥
ଯଦନୁରୂପ କରମ କରେ ଇହଲୋକେ ।
ତଦନୁଯାୟୀ ଫଳ ଯେ ଫଳେ ପରଲୋକେ ॥
ଯଜ୍ଞାଦି କର୍ମବଳରେ ସ୍ୱର୍ଗପୁରେ ବସେ
କର୍ମ କ୍ଷୟ ହେଲେ ପୁଣି ମର୍ତ୍ତ୍ୟପୁରେ ଆସେ ॥
କାମ କାମିନୀ କାଞ୍ଚନ ପ୍ରମୋଦରେ ମାତ ।
ପୂର୍ବ ପୁଣ୍ୟ କର୍ମଫଳ କ୍ଷୟକୁ ଭଜନ୍ତି ॥
ସ୍ୱର୍ଗର ଐଶ୍ୱର୍ଯ୍ୟ କେବେ ନୁହଇ ସୁସ୍ଥିର ।
ଦେବ ମାନବମାନଙ୍କୁ କରଏ ଅସ୍ଥିର ॥

ପୁଣ୍ୟ କର୍ମ ଅନୁସାରେ ସ୍ୱର୍ଗଭୋଗ ପ୍ରାପ୍ତ ।
ପୁଣ୍ୟ କ୍ଷୟେ ସ୍ୱର୍ଗ ଭୋଗ ହୁଅଇ ବିଲୁପ୍ତ ।୨୦।
ପୁନଶ୍ଚ ହୁଅଇ ମର୍ତ୍ତ୍ୟେ ମାନବ ଜନମ ।
କର୍ମଦୁର୍ଭବରେ ଲଭେ ପଶୁପକ୍ଷୀ ଜନ୍ମ ॥
ଯେଉଁମାନେ ତ୍ୟାଗ କରି ବ୍ରହ୍ମ ଉପାସନା ।
ଅନ୍ୟ ଦେବଦେବୀଙ୍କୁ ଯେ କରନ୍ତି ଅର୍ଚ୍ଚନା ॥
ନାନା ସଙ୍କଳ୍ପ କାମନା କରନ୍ତି ନିରତେ ।
ସ୍ୱୟଂ ଆତ୍ମାର ସ୍ମରଣ ନ କରନ୍ତି ଜଗତେ ॥
ବିବିଧ ଭାବେ କରନ୍ତି ଦେବଦେବୀ ପୂଜା ।
ହିଂସାକ୍ରିୟା ଆଚରଣେ ନ କରନ୍ତି ଲଜ୍ଜା ॥
ନାନା ମନ୍ତ୍ର ଉପଦେଶ କରନ୍ତି ଗ୍ରହଣ ।
ମନ୍ତ୍ର ଶବ୍ଦାର୍ଥର ତତ୍ତ୍ୱ ନ କରି ଧାରଣ ॥
ବିରୂପୀ ଯୁବତୀ ଯେହ୍ନେ ନିଜ ସ୍ୱାମୀ ତେଜି ।
କାମ ପ୍ରକୋପରେ ପରପୁରୁଷକୁ ଭଜି ॥
କାମ ଚଞ୍ଚଳପ୍ରକୃତି କରଇ ବର୍ଦ୍ଧନ ।
ସ୍ୱ-ସ୍ୱାମୀଙ୍କ ପ୍ରତି କରେ ଦ୍ରୋହ ଆଚରଣ ॥
ଅତୃପ୍ତ କାମ ତାହାର ନୁହଇ ସନ୍ତୋଷ ।
ଇହ ପର ଜନ୍ମେ ତାର ହୁଏ ଅପଯଶ ॥
ରୌରବାଦ ନର୍କଭୋଗ ହୁଅଇ ତାହାର ।
ସାଧ୍ୱୀପଦେ ଲଭି ନ ପାରଇ ଅଧିକାର ॥
ସେହିରୂପେ ଯେଉଁଜନ ତେଜି ପରମାତ୍ମା ।
ଅନ୍ୟ ଦେବମନ୍ତ୍ର ଦୀକ୍ଷା କରଇ ଦୁରାତ୍ମା ।୩୦।
ନିଜ ପ୍ରାଣର ସ୍ୱାମୀଙ୍କୁ ନ କରି ଭଜନ ।
କାମ୍ୟ କାମନାରେ କରେ ଅନ୍ୟ ଦେବାର୍ଚ୍ଚନ ॥

ସ୍ୱଧର୍ମ ସର୍ବ ତାହାର ହୁଅଇ ବିନଷ୍ଟ ।
ଜନ୍ମାନ୍ତରେ ଭୋଗ କରେ ନରକାଦ କଷ୍ଟ ॥
ନିର୍ବୋଧ ଜନ ଯେପରି ସ୍ୱହସ୍ତ କୌସ୍ତୁଭ ।
ଚିନ୍ତ ତ୍ୟାଗ କରି ଖୋଜି ଗୁଞ୍ଜା କରେ ଲଭ ॥
ସେହି ରୂପେ ତ୍ୟାଗ କରି ବ୍ରହ୍ମ ନାରାୟଣ ।
ଅନ୍ୟ ଦେବତାଙ୍କୁ କଲେ ଅର୍ଚ୍ଚନ ବନ୍ଦନ ॥
କାମନା ସଙ୍କଳ୍ପ ତାର ନୁହେ ସମାପତ ।
ଦେହାନ୍ତରେ ସୁଖଫଳ ନୁହଇ ପ୍ରାପତ ॥
ସର୍ବ ଅନ୍ତର୍ଯାମୀ ପ୍ରଭୁ ଗୁରୁ ପିତାମାତା ।
ସର୍ବ ପ୍ରାଣୀର ରକ୍ଷକ ଯେ ମଙ୍ଗଳଦାତା ॥
ତାହାଙ୍କୁ ନ ଭଜି ଯେହୁ ଭାବଇ ଅନ୍ୟଙ୍କୁ ।
କଦାପି ସେ ଜୟ କରି ନ ପାରେ ମାୟାକୁ ॥
ସର୍ବ ସାଧନ ଭଜନ ହୁଅଇ ବ୍ୟର୍ଥ ।
କାମ୍ୟ କର୍ମ ଫଳ ସର୍ବ ନୁହଇ ଯଥାର୍ଥ ॥
ଯେ ରୂପେ ନିର୍ବୋଧ ମୂଢ଼ ଅଜ୍ଞ ଅକାଞ୍ଚନ ।
କରପଦ୍ମରୁ ଅମୃତ ତେଜିଣ ବହନ ॥
ଲେହନ କରଇ କରତଳ ପୃଷ୍ଠ ଦେଶ ।
ସେ ଯେସନେ ନ ଲଭେ କେବେଁ ଅମୃତର ରସ ।୪୦।
ସେହି ରୂପ ଅନ୍ୟ ଦେବ ଉପାସକ ଜନ ।
ଆମ୍ଭାର ଶ୍ରେଷ୍ଠ ପଦକୁ ନ କରେ ଗ୍ରହଣ ॥
ଭବଯାତନାରେ ଜନ୍ତୁ ହୁଅଇ ସନ୍ତପ୍ତ ।
ଜନ୍ମ ମରଣ ଦୁଃଖରୁ ନୁହେ ସେ ନିବୃତ୍ତ ॥
କର୍ମ ଅନୁସାରେ ଭ୍ରମୁଥାଏ ନାନା ଯୋନି ।
ତ୍ରିଗୁଣ ମାୟାମୋହକୁ ନ ପାରଇ ଜିଣି ॥

ସମୁଦ୍ର ମଧ୍ୟରେ ଯେତେ ଅଛଇ ଯାହାଜ ।
ସାଗର ଉତ୍ତୀର୍ଣ୍ଣ ଅର୍ଥେ ଅଛନ୍ତି ସହଜ ॥
ତାହା ତ୍ୟାଗ କରି ଯଦି କେହି ମୂର୍ଖଜନ ।
କ୍ଷୁଦ୍ର ଜୀବର ପୁଚ୍ଛକୁ କରଣି ଧାରଣ ॥
ସାଗର ପାରି ହେବାକୁ ହୁଏ ସଯତନ ।
ଅନ୍ୟ ଦେବ ଉପାସନା ଗଢନ୍ତି ତେସନ ॥
ବ୍ରହ୍ମା, ବିଷ୍ଣୁ, ରୁଦ୍ର, ଇନ୍ଦ୍ର, ଦେବଦେବୀଗଣ ।
ସଂସାରରୁ କରି ନ ପାରନ୍ତି ପରିତ୍ରାଣ ॥
ଏକ ପରଂବ୍ରହ୍ମ ପରମାତ୍ମା ଅଟନ୍ତି ଯେହୁ ।
ସର୍ବ ଜୀବର ସଦ୍‌ଗତି କରିବନ୍ତି ସେହୁ ॥
ଅନ୍ୟ ଦେବତାଙ୍କୁ ଯେହୁ କରନ୍ତି ସ୍ମରଣ ।
ପଶୁବତ ଜୀଅନ୍ତି ସେ ଦେବଙ୍କ ଅଧୀନ ॥
ଭ୍ରମ ଅନ୍ଧକାରେ ସେହୁ ହୁଅନ୍ତି ପ୍ରବଞ୍ଚ ।
ଦେହାନ୍ତରେ ଲଭନ୍ତି ସେ ବହୁବିଧ କଷ୍ଟ । ୫୦ ।
ଯେଉଁମାନଙ୍କର ଚିତ୍ତ ଅଟେ ବିଚଳିତ ।
ସେହିମାନେ ଅନ୍ୟ ଦେବେ କରନ୍ତି ଆଶ୍ରିତ ॥
ସ୍ୱ ହୃଦରେ ଆତ୍ମତତ୍ତ୍ୱ ଅଛି ବିଦ୍ୟମାନ ।
ସେହି ଏକା ବିନାଶନ୍ତି ଅବିଦ୍ୟା ବନ୍ଧନ ॥
ପରମାତ୍ମାଙ୍କୁ ନ ସେବି କଲେ ବ୍ରତତୀର୍ଥ ।
କୋଟି କଳ୍ପାନ୍ତରେ ସେହୁ ନ ହୁଏ କୃତାର୍ଥ ॥
ଯନ୍ତ୍ର ବିସାଣରେ ପ୍ରାପ୍ତ ନୁହଇ ସଦ୍‌ଗତି ।
ଅକ୍ଷର ମାତ୍ରା ଯନ୍ତ୍ରିତ ଅଜ୍ଞାନ ଭକତ ॥
ପ୍ରଭୁପାଦ ବିନା ଅନ୍ୟ ଦେବଙ୍କୁ ଯେ ଭଜେ ।
କଳ୍ପ କଳ୍ପାନ୍ତରେ ସେହୁ ନର୍କଭୋଗ ଭୁଞ୍ଜେ ॥

ଯେ ରୂପେ ନାଟବୋଧ ବାଳକ ତୃଷ ତି ହୋଇଣ ।
ଜଳସ୍ଥାନ ତ୍ୟାଗ କରି ଗମେ ଅନ୍ୟ ସ୍ଥାନ ॥
ମୃଗତୃଷ୍ଣା ପ୍ରତି ସେହୁ ହୋଇଲେ ଧାବିତ ।
ତାହାର ତୃଷା ଯେସନେ ନ ହୁଏ ନିବୃତ୍ତ ॥
ସେହି ରୂପ ଅନ୍ୟ ଦେବ ଉପାସକଗଣ ।
ମନ ଅଭିଳାଷ କାର୍ଯ୍ୟ କରନ୍ତି ପୂରଣ ॥
ଅସୁରପ୍ରକୃତି ଲୋକ ଦେବୀ ଉଦ୍ଦେଶ୍ୟରେ ।
ପଶୁ ହନନ କରନ୍ତି ଭୁଞ୍ଜିବା ଅର୍ଥରେ ॥
ଦେବୀନାମ ଧରି କରୁଥାଆନ୍ତି ଚିତ୍କାର ।
ଜୀବହିଂସା ମହାଦୋଷ ନ କରି ବିଚାର ॥୬୦॥
ସେହି ହିଂସାଯୁକ୍ତ ପୂଜାରେ ପଥିକ ଯେ ଜନ ।
ମହା ରୌରବ ନରକେ ହୁଅନ୍ତି ପତନ ॥
ଯଦ୍ୟପି ଜନ୍ମ ଲଭନ୍ତି ଏମର୍ତ୍ତ୍ୟମଣ୍ଡଳେ ।
ପଶୁ ସ୍ଥାବରସ୍ୱରୂପ ବହନ୍ତି ଭୂତଳେ ॥
ପ୍ରତିହିଂସା କିମ୍ବା ସର୍ବ ହୁଅଇ ଶୋଧନ ।
ହିଂସା ପ୍ରକ୍ରିୟାରେ ମଜ୍ଜିଥାନ୍ତି ପାପିଜନ ॥
ଅତି ଅତ୍ୟାଗ୍ରହଗଣ ଭୂତପ୍ରେତାଦିକୁ ।
ଅର୍ଚ୍ଚନ କରନ୍ତି ବହି ତାମସ ଗୁଣକୁ ॥
ଦେହାନ୍ତେ ହୁଅନ୍ତି ପୁଣି ଭୂତପ୍ରେତଦେହୀ ।
ଅନେକ ଦୁଃଖ ଭୁଞ୍ଜନ୍ତି ଅଧୋଦେଶେ ରହି ॥
ଦେବପୂଜକ ହୁଅନ୍ତି ଦେବଦେହ ପ୍ରାପ୍ତ ।
ଭୋଗାନ୍ତେ ହୁଅନ୍ତି ପୁଣି ମର୍ତ୍ତ୍ୟରେ ପତିତ ॥
ମ୍ଳେଚ୍ଛମାନେ କରନ୍ତି ପ୍ରତିମା ଅର୍ଚ୍ଚନ ।
ଜଡ଼ସ୍ୱରୂପ ରୂପକୁ କରନ୍ତି ଚନ୍ଦନ ॥

ବିଷ୍ଣୁ ରୁଦ୍ରାଦି ରୂପରେ କରଣି କଳ୍ପନା ।
ନିରନ୍ତରେ କରୁଥାନ୍ତି ବିଗ୍ରହ ଭାବନା ॥
ସ୍ଥୂଳ ଶରୀର ଦେଖି ଭାବନ୍ତି ମନରେ ।
ଜଗତ ଈଶ୍ୱରରୂପ ଏହି ପରକାରେ ॥
ଅମ୍ଭର ଯେ ରୂପ ଅଛୁ ଆହାରାଦିକର୍ମ ।
ସେହିରୂପ କର୍ମ କରନ୍ତିଟି ଆଦିବ୍ରହ୍ମ ।୭୦।
ଷଡ଼ବିକାରରେ ସେହୁ ହୋଇଣି ସମ୍ଭୂତ ।
ମାନବସ୍ୱରୂପେ ହୋଇଛନ୍ତି ଆତଯାତ ॥
ସର୍ବ ଅବୟବ ଅଙ୍ଗେ ହୁଅନ୍ତି ମଣ୍ଡିତ ।
କର୍ମାନୁସାରେ ଭୁଞ୍ଜନ୍ତି ସୁଖ ଅପ୍ରମିତ ॥
ଏହିରୂପ ଅଳୀକ କଳ୍ପନା କରି ଚିତ୍ତେ ।
ଜଡ଼ ସାକାରେ ପୂଜନ୍ତି ସେହୁ ଅନୁବ୍ରତେ ॥
ସେହି ଆକାର ନୁହଇ ଈଶ୍ୱର ସ୍ୱରୂପ ।
କୌଣସି କର୍ମର ସେହୁ ନୁହଇ ଅଧିପ ॥
ନିଜ ଶରୀରସ୍ଥ ଆତ୍ମା ଅଟଇ ଚେତନ ।
ସାକାର ମୂର୍ତ୍ତି ଦେବତା ଅଟନ୍ତି ଅଚେତନ ॥
ଚେତନ ଆତ୍ମାକୁ ଜ୍ଞାନେ ନ ହୋଇ ଗୋଚର ।
ଅଜ୍ଞ ନର ମୂର୍ତ୍ତିପୂଜା କରେ ନିରନ୍ତର ॥
ରାଜସ ଭକ୍ତ ସର୍ବଦା ବହିଷ୍ଠ ହୃଦରେ ।
ମୂର୍ତ୍ତି ଆରାଧନା କରେ ବିବିଧ ପ୍ରକାରେ ॥
ତାମସିକ ଜ୍ଞାନେ ହୃଦ କରି ଜର୍ଜ୍ଜରିତ ।
ସାଧୁଜନ ପାଶେ ବାକ୍ୟ ଭାଷଇ ଗର୍ବିତ ॥
ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ ଯେହୁ ଈଶ୍ୱର ଅଟନ୍ତି ।
ସେହି ଈଶ୍ୱରଙ୍କୁ ଅମ୍ଭେ ପୂଜୁଅଛୁଁ ନିତି ॥

ପ୍ରତିମା ମଧ୍ୟରେ ସେ ଅଛନ୍ତି ବିଦ୍ୟମାନ ।
ଭକ୍ତିଭାବେ ଅମ୍ଭେ କରୁଅଛୁଁ ଯେ ଦର୍ଶନ । ୮୦ ।
ନାନା କୁତର୍କ ଭାବରେ କହଇ ବଚନ ।
ଶାସ୍ତ୍ରର କର୍ମକାଣ୍ଡକୁ କରଣ ପଠନ ॥
ଅମ୍ଭେ ଯାହା କରୁଛୁଁ ତା ସନାତନ ମତ ।
ପୂର୍ବ ଋଷିଗଣ ତାହା କରିଛନ୍ତି ଖ୍ୟାତ ॥
ଏହିରୂପ ବାକ୍ୟ କେତେ କରଣ ଅଭ୍ୟାସ ।
ଯୁକ୍ତିମାନ ଜନଙ୍କ ସଙ୍ଗେ ନ କରଇ ବାସ ॥
ପାଷାଣ, ମୃତ୍ତିକା, କାଷ୍ଠ, ଧାତୁ ଦ୍ରବ୍ୟାଦିରେ ।
ପ୍ରତିମା ନିର୍ମାଣ କରି ମାୟାକଳ୍ପନାରେ ॥
ତଦନ୍ତରୂପେ ମନ୍ଦିର କରି ସୁସଜ୍ଜିତ ।
ତହିଁମଧ୍ୟରେ ପ୍ରତିମା କରେ ପ୍ରତିଷ୍ଠିତ ॥
ପ୍ରାଣ ପ୍ରତିଷ୍ଠା କରନ୍ତି ପୁରୋହିତଗଣେ ।
ଦେବତା ରହନ୍ତି ଆସି ମନ୍ତ୍ରର ଅଧୀନେ ॥
ଜଡ଼ ସ୍ୱରୂପରେ ଦେବ ଥାନ୍ତି ବିଦ୍ୟମାନ ।
ସେହିହେତୁ ଦେବମୂର୍ତ୍ତି ଥାଏ ଅଚେତନ ॥
ବିଶ୍ୱାସ ଭକ୍ତିରେ ଦେବ ପ୍ରକାଶ ହୁଅନ୍ତି ।
ଏହିରୂପେ ଭାବନା କରନ୍ତି ମୂଢ଼ମତି ॥
ଯେଉଁ ଦେବ ଆତ୍ମାରୂପେ ସ୍ୱଦେହରେ ଥାନ୍ତି ।
ସେହି ଦେବ ସର୍ବ ଜଗତରେ ବ୍ୟାପିଛନ୍ତି ॥
ତାହାଙ୍କୁ ନ ଭଜି ଯେହୁ କରେ ମୂର୍ତ୍ତିପୂଜା ।
ପରମ ପଦର ସେହୁ ନ ଟେକଇଁ ଧ୍ୱଜା । ୯୦ ।
ପ୍ରତିମା ପଦରେ କରୁଥାଇ ନମସ୍କାର ।
ଚେତନ ଆତ୍ମା ବସ୍ତୁକୁ ନ କରେ ବିଚାର ॥

ଅଜ୍ଞ କାମ୍ୟ କର୍ମାଦରେ ହୋଇଣ ପ୍ରମତ୍ତ ।
ଜଡ଼ ମୂର୍ତ୍ତିକୁ କରଇ ସଦା ସୁସଜ୍ଜିତ ॥
ନବଧା ଭକ୍ତି କରଇ ପ୍ରତିମାର ପଦେ ।
ବିବିଧ ରଙ୍ଗ ରହସ୍ୟ କରଇ ଆନନ୍ଦେ ॥
ଦେବପ୍ରତିମାର ଭୋଗ ଅଟଇ ଅମାପ ।
ପ୍ରପଞ୍ଚ ବିଷୟ କେତେ କରାଏ ଆରୋପ ॥
ପ୍ରତିମାର ଉପାସନା କରି ଅଜ୍ଞ ନର ।
ସେହି ମୂର୍ତ୍ତିକୁ କହଇ ପ୍ରାଣର ଠାକୁର ॥
ସର୍ବାନ୍ତର୍ଯ୍ୟାମୀ ପ୍ରଭୁଙ୍କୁ ନ ଭଜି ନିବର୍ତ୍ତେ ।
ଦେହାନ୍ତେ ରହଇ ଯାଇ କାଳର ଅଯତ୍ତେ ॥
ଐଶ୍ୱର୍ଯ୍ୟ ଭୋଗ ଭୁଞ୍ଜିଲେ ସ୍ୱର୍ଗାଦି ଭୁବନେ ।
ଅଥବା ଅଗ୍ରେହି ହେଲେ ରାଜ ସିଂହାସନେ ॥
କର୍ମର ବାସନା ବଳେ ହୁଅଇ ବନ୍ଧନ ।
ବ୍ରହ୍ମଜ୍ଞାନ ବିନା ନାଶ ନୁହଇ ଅଜ୍ଞାନ ॥
ଅବିଦ୍ୟାର ଦାସ ହୋଇ ଉପାସକଗଣ ।
ବାରଂବାର ଲଭୁଥାନ୍ତି ଜନମ ମରଣ ॥
ଚିଦାନନ୍ଦସ୍ୱରୂପ ଯେହୁ ହୋଇ ବିସ୍ମରଣ ।
ସ୍ଥୂଳ ଶରୀରକୁ କହୁଥାନ୍ତି ଆତ୍ମାଜ୍ଞାନ । ୧୦୦ ।
ସେହି ଲୋକଗଣ ମୂର୍ତ୍ତି କରଣ ରଚନା ।
ଆତ୍ମାସ୍ୱରୂପ ଭାବରେ କରନ୍ତି ବନ୍ଦନା ॥
ସ୍ୱଅଙ୍ଗରେ ଚର୍ଚ୍ଚିତ ଯେ କରନ୍ତି ଚନ୍ଦନ ।
ତୁଳସୀ ରୁଦ୍ରାକ୍ଷମାଳା କରନ୍ତି ଧାରଣ ॥
ପୂର୍ବଯୁଗ ବିଷ୍ଣୁପ୍ରିୟା ଅଟେ ବୃନ୍ଦାବତୀ ।
ସେହୁ ସ୍ଥାବରଯୋନିରେ ଲଭିଛୁ ଉତ୍ପତ୍ତି ॥

ତୁଳସୀଦେବୀ କଳେଷ୍ଟି ବସ୍ତ୍ର ହେବେ ବଣ ।
ମୂର୍ତ୍ତି ପୂଜକ ବୈଷ୍ଣବ କରନ୍ତି ପ୍ରକାଶ ॥
ରୁଦ୍ରାକ୍ଷର ଅଟେ ରୁଦ୍ରଚକ୍ଷୁରୁ ଉତ୍ପତ୍ତି ।
ଶୈବଗଣ ଏହିଭାବେ ବାକ୍ୟ କହାନ୍ତି ॥
ପାଂଶୁରାଶି ସ୍ୱଅଙ୍ଗରେ କରଣି ଲେପନ ।
ଗଳାରେ ରୁଦ୍ରାକ୍ଷମାଳ କରିଲେ ବନ୍ଧନ ॥
ତାହା ପ୍ରତ୍ୟକ୍ଷରେ ବଶ ହେବେ ଉମାପତି ।
ବୃହତ ପାଷାଣ ଲିଙ୍ଗଧାରି ହୋଇଛନ୍ତି ॥
ଶୈବଗଣ ଏହିରୂପ କରନ୍ତି ବିଗ୍ରହ ।
ଶାକ୍ତଗଣ ଶକ୍ତିଚିହ୍ନ ହୁଅନ୍ତି ସୁନ୍ଦର ॥
ସୌର ଗାଣପତ୍ୟ ଯେତେ ଉପାସକଗଣ ।
ବିବିଧଭାବେ ଅଙ୍ଗକୁ କରନ୍ତି ଭୂଷଣ ॥
ସର୍ବେ ଅଚେତନ ମୂର୍ତ୍ତି କରଣି ଅର୍ଚ୍ଚନ ।
ଦେହାନ୍ତେ ପ୍ରାପ୍ତ ହୁଅନ୍ତି ମୃତ୍ତି ଅଚେତନ । ୧୧୦ ।
ସ୍ୱଦେହର କଣ୍ଠେ ମାଳ କରନ୍ତି ବନ୍ଧନ ।
ବନ୍ଧନ ଦୁର୍ଦ୍ଦଶା କେବେଁ ନୁହଇ ଛେଦନ ॥
ବ୍ରହ୍ମନାମ ମନଃସୂତ୍ରେ କରଣି ଗ୍ରନ୍ଥନ ।
ହୃଦପଦ୍ମରେ ଲମ୍ବିତ ହୋଇଲେ ଯତନ ॥
ଅଜ୍ଞାନଗ୍ରନ୍ଥି ସମସ୍ତ ହୁଅଇ ଛେଦନ ।
ଅସ୍ମାର ନ ଘଟେ ପୁନଃ କର୍ମର ବନ୍ଧନ ॥
ଷଡ଼ରିପୁ ଶତ୍ରୁଜନ କ୍ଷୀଣ ହେଲେ ବଶୀଭୂତ ।
କାମକ୍ରୋଧାନଳ ସର୍ବ ହୁଅଇ ରହିତ ॥
ଅସ୍ମା ପରମ ଶାନ୍ତିରେ ଲଭେ ଶୀତଳତା ।
ମାଲ୍ୟ ଚନ୍ଦନରେ ଖଟେ ନୁହେ ପବିତ୍ରତା ॥

କେବଳ ବାହ୍ୟ ଭୂଷଣ କରନ୍ତି ଶରୀର ।
ମୋଚନ ହୋଇ ନ ପାରେ ଭବକାରାଗାର ॥
ଈଶ୍ୱର ଅଜ ଅବ୍ୟକ୍ତ ନ ଭାବି ମନରେ ।
ଅବତାର ବ୍ୟକ୍ତରୂପ ପୂଜନ୍ତି ହର୍ଷରେ ॥
ପୂର୍ବେ ଯେ ଧରାରେ ହୋଇଥିଲେ ଅବତାର ।
ନାରାୟଣ ରାମ କୃଷ୍ଣ ନାନାଦି ପ୍ରକାର ॥
ସେହିରୂପ ପ୍ରତିମୂର୍ତ୍ତି କରଣି ରଚନ ।
ପ୍ରୀତିସହକାରେ କରୁଥାନ୍ତି ଆରାଧନ ॥
ତାହାଙ୍କ ଅବ୍ୟୟ ରୂପ ନ ସ୍ମରନ୍ତି ଚିତ୍ତେ ।
ନିରନ୍ତରେ ଭ୍ରମୁଥାନ୍ତି ମାୟାର ଗ୍ରନ୍ଥିତେ । ୧୨୦ ॥
ସେହି ଅବତାର ନାମ କରନ୍ତି ସ୍ମରଣ ।
ବିଷ୍ଣୁମନ୍ତ୍ର ନାମେ ଯାହା ହୋଇଛନ୍ତି ବଖାଣ ॥
ମାୟା ସ୍ୱରୂପର ନାମେ ହୋଇ ବିମୋହିତ ।
ବୋଧ କରି ନ ପାରନ୍ତି ବ୍ରହ୍ମଜ୍ଞାନତତ୍ତ୍ୱ ॥
ଅବ୍ୟକ୍ତ ପ୍ରକୃତି ଯେହୁ କରନ୍ତି ରଚନ ।
ଦେହାନ୍ତେ ରହନ୍ତି ସେହୁ ପ୍ରକୃତି ଅଧୀନ ॥
ତନ୍ତ୍ର ଭୈରବୀ ସାଧନ କରି କେତେ ନର ।
ଲୋକସମାଜକୁ କରୁଥାନ୍ତି ଚମତ୍କାର ॥
ମାୟାବନ୍ଧନରୁ ସେହୁ ନୁହନ୍ତି ମୁକତ ।
ଅନ୍ଧତାମିସ୍ର ନରକେ ହୁଅନ୍ତି ପତିତ ॥
ଯେଉଁମାନେ ଅବିଦ୍ୟାର ହୋଇଣ କିଙ୍କର ।
ସର୍ବ ଦେବପାଦେ କରୁଥାନ୍ତି ନମସ୍କାର ॥
ବାକ୍ୟରେ ଭାଷନ୍ତି ବ୍ରହ୍ମ ସର୍ବଭୂତେ ଛନ୍ତି ।
ସେହିହେତୁ ଦେବତାଙ୍କୁ କରୁଛୁ ପ୍ରଣତି ॥

ବ୍ରହ୍ମବନ୍ଧୁଭାବେ ଅମ୍ଭା କରନ୍ତି ବିଗ୍ରହ ।
ପ୍ରକୃତରେ ବ୍ରହ୍ମଜ୍ଞାନୀ ନୁହେଁ ସେହୁ ନର ॥
ପରମାତ୍ମା ସବୁଠାରେ ଥିଲେ ବିଦ୍ୟମାନ ।
ନିର୍ଲିପ୍ତରେ ହୋଇଥାନ୍ତି ଉପାଧିବିହୀନ ॥
ଯେସନେ ଆକାଶେ ରବି ଶଶୀ ତାରାଗଣ ।
ଜଳଘଟାଦିରେ ଦୃଶ୍ୟହୁଏ ଆଭାମାନ ।୧୩୦।
ସେହିରୂପ ପରଂବ୍ରହ୍ମଙ୍କର ଆଭାସରେ ।
ଜୀବଗଣ ଅଜଯାତ ହୁଅନ୍ତି ଜିପୁରେ ॥
ସ୍ୱୟଂ ସେ ଚିନ୍ମୟରୂପେ ବିମଳ ମାନସେ ।
ଅପ୍ରକାଶେ ପ୍ରକାଶିତ ହୋନ୍ତି ଚିଦାଭାସେ ॥
ଅବୋଧ ଜନ ଅମ୍ଭାକୁ ନ କରି ବିଗ୍ରହ ।
ନିରନ୍ତରେ ଭ୍ରମୁଥାନ୍ତି ଦେଶଦେଶାନ୍ତର ॥
କେତେ ବା ଭାବନ୍ତି ଚିତ୍ତ ଏକାଗ୍ର କାରଣେ ।
ପ୍ରତିମାପୂଜାର ବିଧି ରହିଛି ଯତନେ ॥
ଦୃଷ୍ଟି ପଥେ ପ୍ରତିମୂର୍ତ୍ତି କରିଣ ସ୍ଥାପନ ।
ଇଷ୍ଟଦେବତାଙ୍କୁ କଲେ ମନମଧ୍ୟେ ଧ୍ୟାନ ॥
ପରମେଶ୍ୱର ତହିଁରେ ହୁଅନ୍ତି ପ୍ରସନ୍ନ ।
ଅତ୍ମଜ୍ଞାନ ଭକତଙ୍କୁ କରନ୍ତି ପ୍ରଦାନ ॥
ଏରୂପ କଳନା ସବ ଅଟେ ଭ୍ରମାତ୍ମକ ।
ସାକାର ପୂଜାରେ କେବେଁ ଚିତ୍ତ ନୁହେ ଐକ୍ୟ ॥
ଚିତ୍ତ ସ୍ଥୈର୍ଯ୍ୟ ହୁଏ ଚିତ୍ତ ସଂଯମ ନୀତିରେ ।
ଚିଦାତ୍ମାଙ୍କୁ ଭାବୁଥିଲେ ସାଧୁଙ୍କ ସଙ୍ଗରେ ॥
ଚିତ୍ତବିଭ୍ରାନ୍ତିର ନୀତି କରି ବିସର୍ଜ୍ଜନ ।
ଚିତ୍ତ ପ୍ରଶାନ୍ତ ଯୋଗରେ ହୁଅ ସାବଧାନ ॥

ତତ୍ତ୍ୱବିଭ୍ରାନ୍ତିର ଅଧା ନ ହୁଏ ସମ୍ପୂର୍ଣ୍ଣ ।
ତେଣୁ ବନ୍ଧୁଙ୍କୁ ନିତ୍ୟେ କରୁଛନ୍ତି ଶନ୍ତନ ॥

ଇତି ଶ୍ରୀମଚ୍ଛିନ୍ନସ୍ୱବ୍ରହ୍ମଗୀତାୟାଂ ଜ୍ଞାନଭକ୍ତି କର୍ମହୀନ ତତ୍ତ୍ୱବିଭ୍ରାନ୍ତି
ଯୋଗକଥନେ, ଦେବଦେବୀ ମୂର୍ତ୍ତିପୂଜାବିଗ୍ରହଖଣ୍ଡନେ
ତତ୍ତ୍ୱସଂଶୟଚ୍ଛେଦନୋ ନାମ ଷଷ୍ଠୋଽଧ୍ୟାୟଃ ।

—ǂ—

## ସପ୍ତମ ଅଧ୍ୟାୟ

### ଗାର୍ହସ୍ଥ୍ୟଧର୍ମନୀତିଯୋଗ

ଯେଉଁ ବ୍ରହ୍ମନିଷ୍ଠଗଣ ହେଉଥିବେ ଗୃହସ୍ଥ ।
ତତ୍ତ୍ୱବିଭ୍ରାନ୍ତି ଯୋଗରେ ନ ହେବେ ବିଧ୍ୱସ୍ତ ॥
ନିଷ୍କାମ ଭକ୍ତିଯୋଗ କରିବେ ଅଭ୍ୟାସ ।
ଅଭୟ ପାଦରେ ସଦା ରଖିବେ ବିଶ୍ୱାସ ॥
ତତ୍ତ୍ୱସଂଯମର ନୀତି କରିବେ ପାଳନ ।
ନିଷ୍କାମ କର୍ମଯୋଗରେ ହୋଇବେ ନିମଗ୍ନ ॥
ସତ୍ୟ ଧର୍ମ କ୍ରିୟା ସବୁ ଶୀଘ୍ର ଆଚରିବେ ।
ଅସତ କ୍ରିୟାର ପ୍ରତି ବିମୁଖ ହୋଇବେ ॥
ଧର୍ମକାର୍ଯ୍ୟ ପ୍ରତି କେବେଁ ନ କରିବେ ହେଳା ।
ବିଷୟରସରେ ମଜ୍ଜି ନ ହୋଇବେ ଭୋଳା ॥
କଲ୍ୟ କର୍ମକୁ କରିବେ ଅଦ୍ୟ ଦିବସରେ ।
ଅପରାହ୍ନ କର୍ମ କର ପରାହ୍ନକାଳରେ ॥
ଅପେକ୍ଷା ନ କରେ ମୃତ୍ୟୁ କର୍ମ କାରଣକୁ ।
ନିମିଷ ମାତ୍ରକେ ଗ୍ରାସ କରେ ଶରୀରକୁ ॥

ବାଲ୍ୟ ଯୌବନ ବା ବୃଦ୍ଧ ପ୍ରତୀକ୍ଷା ନ କରେ ।
ସକଳ ମନକଳ୍ପଣା ନାଶେ କ୍ଷଣକରେ ॥
ମୃତ୍ୟୁର ବୃତ୍ତାନ୍ତ କହୁ ନୁହେ ସହଜରେ ।
କଏ ବା ଲଭିବ ମୃତ୍ୟୁ କେଉଁ ପରକାରେ ॥
କାଳର ନିର୍ଦ୍ଦିଷ୍ଟ ଗତି କଳି ନୁହେ ଅନ୍ତ ।
କାଳ ସର୍ବ ଜଗତକୁ କରନ୍ତି ଅସ୍ତ୍ୱିତ ॥ ୧୦ ।
ସ୍ୱଧର୍ମ ସଞ୍ଚୟ ପଦେ କରିବ ଯତନ ।
କ୍ଷଣିକ କର୍ମରେ କାଳ ନ କର କ୍ଷେପଣ ॥
ଯେଉଁ ଧର୍ମ ଅଟେ ଅନ୍ତକାଳକୁ ସହାୟେ ।
ପରମ ପଦେ ନିମଗ୍ନ ନିଷ୍ଠପ୍ର କରାଏ ॥
ବ୍ରହ୍ମଜ୍ଞାନଭକ୍ତି ଜାତ କରେ ସ୍ୱହୃଦରେ ।
ସେହି ଧର୍ମକୁ ସାଧନ କର ନିରନ୍ତରେ ॥
ଇହ ଜୀବନରେ ଯଶ ହୁଏ ଅପ୍ରମିତ ।
ପର ଜୀବନରେ ଆତ୍ମା ହୁଅଇ କୃତାର୍ଥ ॥
ଧର୍ମନାମେ ନାନାମତ ହୁଏ ବ୍ୟବହାର ।
ଲୌକିକ ବୈଦିକ କର୍ମ ଭୌତିକ କିୟାର ॥
ଇନ୍ଦ୍ରିୟ ପ୍ରବୃତ୍ତି ନିବୃତ୍ତିକ ସୁବିସ୍ତର ।
ବିବିଧ ମତରେ ଧର୍ମ ନାମ ହୁଏ ତାର ॥
ନାନା ଉପାସ କରିବା ନାନାବିଧ ମତେ ।୮
ଧର୍ମନାମକୁ ସଂଯୁକ୍ତ କରନ୍ତି ବିପଥେ ॥
ପ୍ରକୃତ ଧର୍ମ ଅଟନ୍ତି ଏକ ପରମାତ୍ମା ।
ଏକାଂଶେ ଧାରଣ କରନ୍ତି ସର୍ବ ଆତ୍ମା ॥
ଅଶେଷ ବ୍ରହ୍ମାଣ୍ଡ କରିଅଛନ୍ତି ଧାରଣ ।
ସେହି ସେ ପରମ ପ୍ରଭୁ ଜଗତ ନିଧାନ ॥

ତାହାଙ୍କ ଚେତନେ ଅଛୁ ହେଉଛୁ ଚେତନ ।
ସେହି ଏକମାତ୍ର ଧର୍ମ ନାମରେ ପ୍ରଧାନ । ୨୦ ।
ତାହାଙ୍କୁ ଆଶ୍ରୟ କଲେ ଜୀବ ଅହର୍ନିଶ ।
ଅବିଚଳିତଭାବରେ ରଖିଲେ ବିଶ୍ୱାସ ॥
ଧାର୍ମିକପଦରେ ହୁଏ ଜଗତେ ବିଖ୍ୟାତ ।
ଧର୍ମସଭାର ମଧ୍ୟରେ ହୁଅଇ ପୂଜିତ ॥
କୁମାରକାଳରୁ ଧର୍ମ ଆଶ୍ରୟ କରିବ ।
ବିଷୟବାସନା ସର୍ବ ଦୂରରୁ ତେଜିବ ॥
ଧର୍ମ ଶାସ୍ତ୍ର ଅଧ୍ୟୟନ କରିବ ଯତ୍ନରେ ।
ତର୍କ ପାଷଣ୍ଡ ଶାସ୍ତ୍ରକୁ ତେଜିବ ଦୂରରେ ॥
ସାଧୁ ସହବାସ କରୁଥିବ ନିତ ନିତ ।
ସୁସାଧୁ ସେବା କରିଲେ ବୋଲାଇବ ଯତ ॥
ଯେଉଁ ଅବସ୍ଥାରେ ହୃଦେ ଉପୁଜିବ ଜ୍ଞାନ ।
ପ୍ରଭୁ ପାଦପଦ୍ମେ ଭକ୍ତି କରିବ ଯତନ ॥
ଜ୍ଞାନ ଉପଦେଶ ନେବ ସଦ୍‌ଗୁରୁଙ୍କଠାରୁ ।
ପାର କରି ନେବେ ଯେହୁ ଏ ମାୟା ମୋହରୁ ॥
ଯାଠାରେ ନ ଥିବ ସଂସାରର ଅହମିକା ।
କାମଗୁଣ ଉଦ୍ରେକର ନ ଥିବଟି ଦକା ॥
ସଂସାରବନ୍ଧନ ଯାର ହୋଇଥାଏ କ୍ଷୟ ।
ପ୍ରଜ୍ଞାନ ପଦକୁ ଲଭିଥାଏ ସୁନିଶ୍ଚୟ ॥
ବ୍ରହ୍ମତତ୍ତ୍ୱ ବିଜ୍ଞାନରେ ସଦା ତତପର ।
କ୍ଷଣମାତ୍ର ତତ୍ତ୍ୱପଦୁ ନୁହନ୍ତି ବାହାର । ୩୦ ।
କାମିନୀ କାଞ୍ଚନ କେବେ ନ କରେ ସ୍ମରଣ ।
ସର୍ବଦା ସେ ମଣ୍ଡି ରହୁଥାଏ ଏକରସ ॥

ଔଦାର୍ଯ୍ୟଭାବରେ ମହୀ କର ପର୍ଯ୍ୟଟନ ।
ବେଦ ବେଦାନ୍ତ ତାତ୍ପର୍ଯ୍ୟ କରଣ ଧାରଣ ॥
ସାଧୁର ସର୍ବ ଲକ୍ଷଣେ ହୋଇ ସେ ଭୂଷିତ ।
ସର୍ବଠାରେ ଉପସ୍ଥିତ ହୁଏ ତୀର୍ଥବତ୍ ॥
ଅବଧୂତ ପରମ ସନ୍ନ୍ୟାସ ରୂପ ଧରି ।
ବ୍ରହ୍ମନିଷ୍ଠ ହୋଇ ଭ୍ରମୁଥାନ୍ତି ବସୁନ୍ଧରୀ ॥
ଭବସାଗରକୁ ସେ ଅଟନ୍ତି କର୍ଣ୍ଣଧାର ।
ଧର୍ମନାବେ ପ୍ରାଣିଗଣେ କରନ୍ତି ଉଦ୍ଧାର ॥
ସେହି ସିଦ୍ଧଗୁରୁପଦେ ହୁଅନ୍ତି ଭାଜନ ।
ତାହାଙ୍କୁ କରିବ ଭକ୍ତିରେ ଆରାଧନ ॥
ଭୂମିଷ୍ଠ ହୋଇ ସାଷ୍ଟାଙ୍ଗେ କରିବ ପ୍ରଣାମ ।
ପାଦରଜ ପାଇ ଶିରେ କରିବ ଧାରଣ ॥
ସେବା ପୂଜା କରି ଅତ୍ୟନ୍ତ ସହକାରେ ।
ମନର ସଂଶୟ ସର୍ବ ଭାଷି ବଦନରେ ॥
ସର୍ବ ସଂଶୟ ହୃଦରୁ ହୋଇଲେ ଛେଦନ ।
ଜ୍ଞାନ ଉଚିତ ବିଷୟେ କରିବ ପ୍ରାର୍ଥନ ॥
ହେ ଗୁରୁ କରୁଣାମୟ ଦୟାର ସାଗର ।
ପ୍ରଣତ ଜନଙ୍କୁ ଭବୁ କରୁଛ ଉଦ୍ଧାର । ୪୦ ॥
ଲୋକହିତେ ସଂସାରରେ ଭ୍ରମୁଛ ଆପଣ ।
ସୁଜ୍ଞାନ ଉପଦେଶରେ କର ପରିତ୍ରାଣ ॥
ମୁଁ ଦୀନ ଅଟଇଁ ତବ ପାଦର ସେବକ ।
ଆପଣଙ୍କ ସୁଧା ବାକ୍ୟ ଅଜ୍ଞାନନାଶକ ॥
ବ୍ରହ୍ମଜ୍ଞାନ ଭକ୍ତିଯୋଗ କରନ୍ତୁ ପ୍ରଦାନ ।
ଯେରୂପେ ହୋଇବି ସଂସାରରୁ ବିମୋଚନ ॥

ଅନ୍ୟ କୌଣସି ଉପାୟ ନାହିଁ ମୋ ମନରେ ।
ମନ ଆକାଙ୍କ୍ଷା ପୂରଣ ହେବ ଶ୍ରୀଗୁରୁରେ ॥
ଜନ୍ମକୃତ ଦୋଷ ସବ କରିବ କ୍ଷାଳନ ।
ଗୁରୁ ଆଜ୍ଞାରେ ହୋଇବ ସମସ୍ତ ଦର୍ଶନ ॥
ଏହି ରୂପ ବାରଂବାର କରିବ ପ୍ରାର୍ଥନ ।
ତତ୍ତ୍ୱଜ୍ଞାନୀ ସାଧୁ ସ୍ୱୟଂ ହୋଇ ସୁପ୍ରସନ୍ନ ॥
ବ୍ରହ୍ମଜ୍ଞାନ ଭକ୍ତିଯୋଗ ଦେବେ ଉପଦେଶ ।
ଯେଉଁ ଉକତରେ ନାହିଁ ଅଜ୍ଞାନର ଲେଶ ॥
ବ୍ରହ୍ମଦୀକ୍ଷା ସତ ଶିକ୍ଷା କରିବେ ପ୍ରଦାନ ।
ଯେଉଁ ଭାବେ ଜ୍ଞାନ ଭକ୍ତି ହୋଇବ ବର୍ଦ୍ଧନ ॥
ସେହି ସତ୍ୟ ଉପଦେଶ ଶିରୋଧାର୍ଯ୍ୟ କରି ।
ସତ କର୍ମ କରୁଥିବ ବ୍ରହ୍ମଙ୍କୁ ସୁମରି ॥
ବ୍ରହ୍ମନିଷ୍ଠ ସନ୍ନ୍ୟାସୀ ଅଟନ୍ତି ଗୁରୁଜନ ।
ଗୃହୀଗଣ ଗୁରୁପଦେ ନୁହନ୍ତି ଭାଜନ । ୫୦ ॥
ସଂସାର ମଧ୍ୟରେ ଯାର ଥାଏଟି ବନ୍ଧନ ।
ବନ୍ଧନକାରୀଙ୍କୁ ସେହୁ ନ କରେ ମୋଚନ ॥
ଅନ୍ଧକୁ ଚାଳିତ କରେ ଅନ୍ଧ ଯେଉଁ ରୂପେ ।
ଗୃହୀଜନ ଗୁରୁପଦ ଅଟେ ସେ ସ୍ୱରୂପେ ॥
ଭବସାଗର ମଧ୍ୟରୁ ନ କରେ ଉଦ୍ଧାର ।
ସ୍ୱୟଂ ସେ ପଡ଼ନ୍ତି ହୁଏ ମହା ଅନ୍ଧକାର ॥
ନିର୍ମଳ ଜଳରେ କଲେ ଅଙ୍ଗ ପ୍ରକ୍ଷାଳନ ।
ଧୌତ ନିତକ୍ରିୟା ସବ ହୁଏ ସମ୍ପାଦନ ॥
ପାନ କରି ପ୍ରାଣୀ କରିଥାଏ ତୃପ୍ତି ଲାଭ ।
ଅବିଳ ଜଳ ଯେସନେ ନୁହଇ ସୁଲଭ ॥

ସେହିରୂପ ସତ୍ତ ସାଧୁ ଗୁରୁପଦଯୋଗ୍ୟ ।
ଗୃହିଜନ ସଦା ଗୁରୁପଦରେ ଅଯୋଗ୍ୟ ॥
ଅହଂକାରୀ ଖଳଯୁକ୍ତ କପଟୀ ଯେ ଜନ ।
ଏରୂପ ଗୁରୁଙ୍କୁ ତ୍ୟାଗ କରିବ ବହନ ॥
ସିଦ୍ଧ ସାଧୁ ଗୁରୁଙ୍କର ସେବା କରୁଥିବ ।
ସାବଧାନ ହୋଇ ଗୁରୁ ଆଜ୍ଞା ନ ଲଙ୍ଘିବ ॥
ଗୃହ ସଂସାରମାର୍ଗରେ ହୋଇଲେ ପ୍ରବେଶ ।
ଅଯଥାରେ ବ୍ରହ୍ମଚର୍ଯ୍ୟ ନ କରିବ ଧ୍ୱଂସ ॥
ସ୍ୱପତ୍ନୀକୁ ସ୍ୱଧର୍ମରେ କରିଲ ଦୀକ୍ଷିତ ।
ଯତି ସତୀ ଭାବେ ସଦା ରହିବ ସଂଯତ ॥
ଋତୁବିଶୁଦ୍ଧ ଦିବସେ ରାତ୍ରି ସମୟରେ ।
ପୁତ୍ର ଜନ୍ମାର୍ଥରେ ରତି କରିବ ଯତ୍ନରେ ॥
ଶୁଭ ଯୋଗ ଧରି ରତିକ୍ରିୟା ଆରମ୍ଭିବ ।
କର୍ମର ଫଳ ଯେରୂପେ ଯଥାର୍ଥ ହୋଇବ ॥
ନିଶି ଶେଷ ଯାମ ଆସି ହୋଇଲେ ପ୍ରବେଶ ।
ଉଭୟରେ ଶୌଚକୃତ କରିବ ବିଶେଷ ॥
ବ୍ରହ୍ମ ଶରଣ ଦର୍ଶନ କରିବ ତପ୍ୟରେ ।
ଅନ୍ୟ ଦିନେ ରତିକ୍ରିୟା ତେଜିବ ଦୂରରେ ॥
କୁପୁରୁଷ କୁଲକ୍ଷଣା ନାରୀମାନେ ନିତି ।
ପଶୁଭାବରେ ସଦା କରୁଥାନ୍ତି ରତି ॥
ଇନ୍ଦ୍ରିୟଗଣ କାମରେ ହୋଇଣ ଅଧୀନ ।
ସ୍ୱଧର୍ମର ନିୟମକୁ କରନ୍ତି ଲଙ୍ଘନ ॥
ଋତୁ ଅଶୁଦ୍ଧର କାଳ ନ କର ବାରଣ ।
ଅଋତୁରେ କାମ ପ୍ରେମେ ରହନ୍ତି ମଗ୍ନେ ॥

ଦୁଷ୍ଟପଥରେ ଭକ୍ତିତ କରି ନ ପାରନ୍ତି ।
ନାରକରେ ମାୟାବଶେ ଭ୍ରମି ହେଉଥାନ୍ତି ॥
ଯେଉଁ ବ୍ରହ୍ମନିଷ୍ଠ କରେ ବିହିତ ଆଚାର ।
ପୁତ୍ର ଜନ୍ମାର୍ଥରେ କରେ କରେ ବ୍ୟବହାର ॥
ନାୟମିତଭାବେ କରେ ଅନ୍ତତ ପ୍ରଦାନ ।
ସେହି ଅଂଶରୁ ସତ୍ପୁତ୍ର ହୁଅଇ ଉତ୍ପନ୍ନ ।୨୦।
ସେମାନେ ହୁଅନ୍ତି ବ୍ରହ୍ମନିଷ୍ଠାପରାୟଣ ।
ଦେହାନ୍ତରେ ପ୍ରାପ୍ତ ହୁଏ ପଦ ଯେ ନିର୍ଗୁଣ ॥
ଅବିହିତ କର୍ମେ ଯେହୁ ହୁଅଇ ଉତ୍ପନ୍ନ ।
ସତ୍ୟଧର୍ମ କ୍ରିୟା ସବୁ ନ କରେ ପାଳନ ॥
ବର୍ଣ୍ଣସଙ୍କର ଭାବରେ କରୁଥାନ୍ତି କର୍ମ ।
ଜନ୍ମ ଜନ୍ମାନ୍ତରେ ପ୍ରାପ୍ତ ନ ହୁଅନ୍ତି ଧର୍ମ ।
ଅବିହିତ କର୍ମତ୍ୟାଗ କରିଣ ସୁଜନ ।
ସଜ୍ଜନ ସଙ୍ଗତେ ମଜ୍ଜି ରହ ଅନୁକ୍ଷଣ ॥
ପ୍ରତିନିତ୍ୟ କରୁଥିବ ଅତିଥିସତ୍କାର ।
ଅତିଥି ସନ୍ନ୍ୟାସ ସାଧୁ ଇଷ୍ଟ ଗୃହୀଙ୍କର ।
ଶକ୍ତ୍ୟନୁରୂପେ କରିବ ଅତିଥିପୂଜନ ।
ପକ୍ୱାନ୍ନ ବ୍ୟଞ୍ଜନ ଦ୍ରବ୍ୟ କରାଇ ଭୋଜନ ॥
ସନ୍ନ୍ୟାସୀ ଅତିଥି ହେଲେ ଗ୍ରାମେ ଉପଗତ ।
ଯଥାବିଧି ସମ୍ମାନ ଯେ କରିବ ତ୍ୱରିତ ॥
ନିର୍ମଳ ଜଳେ କରାଇ ପାଦ ପ୍ରକ୍ଷାଳନ ।
ଆସନ ନିମନ୍ତେ ଦେବ ଉପଯୁକ୍ତ ସ୍ଥାନ ॥
ଭିକ୍ଷା ପ୍ରଦାନ କରିବ ଯତ୍ନସହକାରେ ।
ତଦନ୍ତେ ସ୍ୱୟଂ ଭୋଜନ କରିବ ଗୃହରେ ॥

ସାଧୁଙ୍କୁ ଭିକ୍ଷା ନ ଦେଇ କଲେ ଭୋଜନ ।
ଭୋଜ୍ୟ ଦ୍ରବ୍ୟ ହୁଏ ସର୍ବ ସୁରା-ସମାନ ॥୮୦॥
ସାଧୁ ଅତିଥି ହୋଇଲେ ଗୃହରୁ ନିରାଶ ।
ସଞ୍ଚିତ ଧର୍ମ ସକଳ ହୁଅଇ ବିନାଶ ॥
ସିଦ୍ଧ ସାଧୁ ଗୁରୁଜନ ସେବା-କରୁଥିବ ।
ଗୁରୁପ୍ରସାଦ ଅନ୍ନକୁ ଯତ୍ନରେ ପାଇବ ॥
ସଂସାରରେ ବନ୍ଧୁ କରୁଥିଲେ ସାଧୁ ଗୋଷ୍ଠୀ ।
ଧର୍ମ ପାଳନରେ କେବେହେଁ ନ ଘଟେ ଅରଷ୍ଟି ॥
ସାଧୁସଙ୍ଗ ମୂଳ ଅଟେ ମୋକ୍ଷର ସୋପାନ ।
ସାଧୁଙ୍କ ହୃଦୟ ଅଟେ ପ୍ରଭୁଙ୍କ ଭୁବନ ॥
ସାଧୁ ରସନାରେ ପ୍ରଭୁ ଥାନ୍ତି ବିଜେ କରି ।
ସେ ଅଟନ୍ତି ସର୍ବଜନଙ୍କର ଶୁଭକାରୀ ॥
ଜଗତର କରୁଥାନ୍ତି ମଙ୍ଗଳ ବିଧାନ ।
ଜୀବର ଅଜ୍ଞାନଗ୍ରନ୍ଥି କରନ୍ତି ଛେଦନ ॥
ସର୍ବଦା ବିମଳ ମତି ଅଟେ ସାଧୁଙ୍କର ।
ମନ୍ତ୍ରର ବିହୀନେ କରୁଥାନ୍ତି ସୁବିଚାର ॥
ପ୍ରଶାନ୍ତ ହୃଦୟ ନିତି ଅଟଇ ପବିତ୍ର ।
ସର୍ବଜନଙ୍କର ସେହୁ ହୋଇଥାନ୍ତି ମିତ୍ର ॥
ପ୍ରିୟ ହିତ ବଚନ ଭାଷନ୍ତି ନିରନ୍ତରେ ।
ବିଚରଣ କରୁଥାନ୍ତି ସଦା ନିର୍ମାୟାରେ ॥
ସେହି ସାଧୁଙ୍କ ହୃଦୟେ ପ୍ରଭୁଙ୍କର ବାସ ।
ସାଧୁ ଦର୍ଶନରେ ପାପ ହୁଅଇ ବିନାଶ ॥୯୦॥
ଯା ଗୃହରେ ସାଧୁସେବା ହୁଅଇ ନିରନ୍ତର ।
ଗୃହବାସିଗଣ ରହିଥାନ୍ତି ଆନନ୍ଦରେ ॥

ସାଧୁ ସଙ୍ଗେ ନାଶ ହୁଏ ମନର ସନ୍ତାପ ।
ଅଦ୍ଭୁତ ମତେ କରିଲେ ଆଳାପ ପ୍ରଳାପ ॥
ପ୍ରଭୁଙ୍କର ଆଜ୍ଞାବହ ହୋଇ ସାଧୁଜନ ।
ଗୃହୀଜନ ମଙ୍ଗଳାର୍ଥେ କରନ୍ତି ଭ୍ରମଣ ॥
ମହତ ସଜ୍ଜନ ସାଧୁ ସେବା କରୁଥିବ ।
ଅସତସଙ୍ଗ ସର୍ବଦା ଦୂରରୁ ତେଜିବ ॥
ସ୍ୱ-ଧର୍ମ ଅନୁଷ୍ଠାନେ ରହି ପ୍ରାତଃ ସାୟଂକାଳେ ।
ବ୍ରହ୍ମସ୍ମରଣ ଦର୍ଶନ କରିବ ନିରୋଳେ ॥
ଗୃହ ସଂସାର ବିଷୟ ନ ଭାବିବ ମନେ ।
ଭକ୍ତିଯୋଗ ସାଧନ କରିବ ଯତନେ ॥
କର୍ମ ବିଷୟବାସନା ଯେତେ ଦୋଷମାନ ।
ଜ୍ଞାନ ଭକ୍ତିରେ ସର୍ବ ହୁଅଇ ଦହନ ॥
ନିଷ୍କାମ କର୍ମଯୋଗକୁ କରିବ ଅଭ୍ୟାସ ।
ଚିତ୍ତ ସଂଯମରେ କେବେଁ ନ ରହେ କଲୁଷ ॥
ଅନିତ୍ୟ ଦୁଃଖ ସୁଖରେ ହେବ ସମଜ୍ଞାନୀ ।
ଅବିଚଳିତ ହୋଇବ ପ୍ରବୃତ୍ତି ଜ୍ଞ ଦେନି ॥
ଧର୍ମଶାସ୍ତ୍ର ନିତ୍ୟେ କରୁଥିବ ଅଧ୍ୟୟନ ।
ପ୍ରାତଃ ସାୟଂକାଳେ କର ଭଜନ ଗାୟନ । ୧୦୦ ।
ଭଜନ ସମୟେ ଯେହୁ ନ କରେ ଗାୟନ ।
ଅଥବା ନ କରେ ପଦ ଅର୍ଥର ଚିନ୍ତନ ॥
ଅମୃତ ପ୍ରଭୁନାମକୁ ନ କରେ ଶ୍ରବଣ ।
ବୃଥାଳାପ ବୃଥା ଚିନ୍ତା କରେ ଅନୁକ୍ଷଣ ॥
ମାନବ ମଧ୍ୟରେ ସେହୁ ଅଟଇ ଅଧମ ।
ପ୍ରକୃତ ତ ହୋଇ ଅଟେ ପଶୁପକ୍ଷୀ ସମ ॥

ଜନ୍ମ ଜନ୍ମାନ୍ତରେ କରି ନ ପାରେ ଭକତି ।
ଅନ୍ତେ ପ୍ରାପତ ହୁଅଇ ସେହୁ ଅଧୋଗତି ॥
ସାଧୁ ଆଶ୍ରମ କରିବ ଅତି ସୁନିର୍ମଳ ।
ସୁସାଧୁ ସଙ୍ଗେ ଚିତ୍ତ ଯେ ହୁଅଇ ବିମଳ ॥
ନାସ୍ତିକ ଦୁର୍ଜ୍ଜନସଙ୍ଗେ ନ କରିବ ବାସ ।
ପ୍ରଭୁ ପାଦପଦ୍ମେ ସଦା ରଖିବ ବିଶ୍ୱାସ ॥
ପିତା ମାତା ପୁତ୍ର କଳତ୍ରାଦି ବନ୍ଧୁଜନ ।
ତାହାଙ୍କ ପୋଷଣ କର୍ମେ କରିବ ଯତନ ॥
କାହାର ମୁଖରେ କେବେଁ ନ କର ସନ୍ତାପ ।
ସନ୍ତାପ ବିନାଶ କରେ ନିଜର ସ୍ୱରୂପ ॥
ଜନ୍ମ ମୃତ୍ୟୁ କିମ୍ବାଦିର ହୋଇଲେ ଅଶୌଚ ।
ଗୁରୁଆଜ୍ଞା ବିଧାନରେ ହୋଇବ ଶଉଚ ॥
ସିଦ୍ଧ ଗୁରୁଙ୍କୁ କରିବ ଭୂମିଷ୍ଠ ପ୍ରଣାମ ।
ତାହାଙ୍କର ପାଦୋଦକ କରୁଥିବ ପାନ । ୧୧୦ ।
ଅନ୍ୟଜନଙ୍କୁ ଭୂମିଷ୍ଠେ ନ କରିବ ମାନ୍ୟ ।
କରପଦ୍ମ ଯୋଡ଼ି ହସ୍ତେ କରିବ ପ୍ରଣାମ ॥
ବିବିଧ ରଙ୍ଗ ରହସ୍ୟ ପୂଜା ନାଟ ଯେତେ ।
ଜୁଆ ଶକଟାଦି ଖେଳ କ୍ରିୟା ସହିତେ ॥
କଦାଚିତ ତାହା ନ କରିବ ଅନୁଷ୍ଠାନ ।
ଅନ୍ୟ ଦେବଦେବୀଙ୍କୁ ଯେ ନ କରି ଅର୍ଚ୍ଚନ ॥
ଦେବନିର୍ମାଲ୍ୟାଦି ପତ୍ର ପୁଷ୍ପ ଫଳ ଜଳ ।
ଗ୍ରହଣ ଅଘ୍ରାଣ ସ୍ପର୍ଶ ଦର୍ଶନ ସକଳ ॥
ବର୍ଜ୍ଜନ କରିବ ଏହା ବାହ୍ୟ ଅଭ୍ୟନ୍ତରୁ ।
ନିରନ୍ତରେ ଭାବୁଥିବ ଅଲେଖ ଶ୍ରୀଗୁରୁ ॥

ଗୃହମଧ୍ୟେ ଶୁଭକର୍ମ ହୋଇଲେ ପ୍ରବେଶ ।
ବ୍ରହ୍ମ ସ୍ମରଣରେ ତାହା କରିବ ଅବଶ୍ୟ ॥
ପର୍ବଦିନ କାଳରେ କରୁଥିବ ବାଳିଖେଳା ।
ଘୃତ ଦୀପାବଳୀ ଜାଳି ନାମେ ହେବ ଭୋଳା ॥
ପୁତ୍ର ପୁତ୍ରୀଙ୍କୁ କରଣ ସ୍ୱଧର୍ମେ ଦୀକ୍ଷିତ ।
ବ୍ରାହ୍ମ ବିବାହରେ କର ସୁମଙ୍ଗଳ କୃତ ॥
ବନ୍ୟ ପଶୁପକ୍ଷୀ ଗୃହେ ନ କର ବନ୍ଧନ ।
ଦୀନ ଦରିଦ୍ରଙ୍କୁ କରୁଥିବ ଅନ୍ନ ଦାନ ॥
ନାରୀଗଣ ସତ୍ୟଧର୍ମେ ହୋଇଣ ଦୀକ୍ଷିତ ।
ସତୀତ୍ୱ ସ୍ୱଭାବ ସଦା ରଖିବେ ଜାଗ୍ରତ । ୧୨୦ ।
ଯତି ସତୀ ଭାବେ ଗୃହେ ହେ ନରନାରୀ ।
ଜ୍ଞାନ ଭକତରେ ତରୁଁ ଯାଆନ୍ତି ଉଦ୍ଧରି ॥
ସାଧୁସଙ୍ଗ ବ୍ରହ୍ମନିଷ୍ଠା କରେ ଯେ ନିତ୍ୟରେ ।
ଅନାୟାସେ ଘୋରମାୟା ମୋହରୁ ଉଦ୍ଧରେ ॥
ଗୁରୁଶାସ୍ତ୍ର ବାକ୍ୟେ ଧର୍ମନୀତି ଅନୁସରି ।
ଧର୍ମ ଅର୍ଥ କାମ ମୋକ୍ଷେ ହୁଅ ଅଧିକାରୀ ॥
ଚିତ୍ତ ସଂଯମ ନୀତିକୁ କରଣ ଅଭ୍ୟାସ ।
ଚିତ୍ତବୃତ୍ତି ଚାଞ୍ଚଲ୍ୟର ଗତି କରିବ ବିନାଶ ॥
ଚିଦାନନ୍ଦ ବ୍ରହ୍ମେ ସଦା ରଖି ମନ ପ୍ରାଣ ।
ଗୃହସ୍ଥର ଧର୍ମନୀତି କରିବ ପାଳନ । ୧୨୫ ।

ଇତିଶ୍ରୀମଚ୍ଛିଦାନନ୍ଦ ବ୍ରହ୍ମଗୀତାୟାଂ ଗାର୍ହସ୍ଥଧର୍ମନୀତି-
ଯୋଗବର୍ଣ୍ଣନେ, ଗୁରୂପଦେଶ ବିସ୍ତରଣେ
ସଂସାରପାପତାପଖଣ୍ଡନୋ ନାମ
ସପ୍ତମୋଽଧ୍ୟାୟଃ । ୭ ।

---

# ଅଷ୍ଟମ ଅଧ୍ୟାୟ

## ମାତୃଗର୍ଭ ଜ୍ଞାନଯୋଗ

ମାତୃଗର୍ଭ ଜ୍ଞାନ ଅଟେ ଅତି ଅଲୌକିକ ।
ସିଦ୍ଧ ସାଧୁଜନେ ତାହା କରନ୍ତି ବିବେକ ॥
କିରୂପରେ ଶରୀର ହୋଇଲା ବିରଚିତ ।
ଯାହାକୁ ଚିନ୍ତିଲେ ଚିତ୍ତ ହୁଏ ଚମତ୍କୃତ ॥
କେଉଁରୂପେ ମାତୃଗର୍ଭେ ହୁଏ ତା ନିର୍ମାଣ ।
କେଉଁରୂପେ ସଞ୍ଚରଇ ଏ ଦେହରେ ପ୍ରାଣ ॥
ନାଡ଼ୀସଞ୍ଚାର ବିଜ୍ଞାନ ହେଲା କି ପ୍ରକାର ।
ଚର୍ମ ରକ୍ତ ମାଂସ ଅସ୍ଥି ମଜ୍ଜା ଶୁକ୍ର ସାର ॥
ଏଥିର ସଂକ୍ଷିପ୍ତ ବ୍ୟାଖ୍ୟା ହେଉଛି ବର୍ଣ୍ଣନ ।
ଯେଉଁରୂପେ ପ୍ରାଣୀମାନେ ଲଭିବେ ସଦ୍‌ଜ୍ଞାନ ॥
ଦେହମଧ୍ୟେ ନାଡ଼ୀ ସଂଖ୍ୟା ଅଟଇ ଅନେକ ।
ଚତୁର୍ଦ୍ଦଶ ସହସ୍ର ଯେ ତନ୍ମଧ୍ୟେ ଠିକ ॥
ନାଭି ସ୍କନ୍ଧ ଊର୍ଦ୍ଧ୍ୱେ ଅଛି ସର୍ବନାଡ଼ୀମୂଳ ।
ଶାଖା ପ୍ରଶାଖା ବ୍ୟାପିଛି ସର୍ବ ହୃଦସ୍ଥଳ ॥
ତଥିମଧ୍ୟେ ଦଶ ନାଡ଼ୀ ଅଟଇ ପ୍ରଧାନ ।
ଦଶ ମଧ୍ୟେ ତ୍ରୟନାଡ଼ୀ ଲଭେ ଶ୍ରେଷ୍ଠସ୍ଥାନ ॥
ଇଡ଼ା ନାଡ଼ୀ ରହିଅଛି ବାମଭାଗେ ସ୍ଥିତ ।
ପିଙ୍ଗଳା ଦକ୍ଷଭାଗରେ ହୋଇଛି ସ୍ଥାପିତ ॥
ସୁଷୁମ୍ନା ମଧ୍ୟଦେଶେ ରହି ବିଦ୍ୟମାନ ।
ବ୍ରହ୍ମରନ୍ଧ୍ର ସ୍ଥାନ କରିଅଛି ଅଧିଷ୍ଠାନ ॥

ଗାନ୍ଧାରୀ ବାମଚକ୍ଷୁରେ ବସେ ହସ୍ତିଜିହ୍ୱା ।
ପୂଷା ଦକ୍ଷକର୍ଣ୍ଣେ ରହି କରେ ଶବ୍ଦେ ସ୍ପୃହା ॥
ଯଶସ୍ୱିନୀ ବାମକର୍ଣ୍ଣେ ମୁଖେ ଅଲମ୍ବୁଷା ।
କୁହୁନାଡ଼ୀ ଲିଙ୍ଗଦେଶେ କରଥାଏ ବସା ॥
ମୂଳସ୍ଥାନ ମଧ୍ୟେ ରହିଅଛଇ ଶଙ୍ଖିନୀ ।
ଦଶବିଧ ନାଡ଼ୀ ଦଶ ଦ୍ୱାରେ ଥାନ୍ତି ଚିହ୍ନି ॥
ସ୍ୱସ୍ୱ କର୍ମ ବିଧାନରେ ଥାନ୍ତି ସେ ପ୍ରବୃତ୍ତ ।
ବାୟୁ ପ୍ରବାହିତ ବେଳେ ହୁଅନ୍ତି ଜାଗ୍ରତ ॥
ଦଶବିଧ ନାମ ବହି ଅଛଇ ସମୀର ।
କାର୍ଯ୍ୟ କାରଣରେ ସଦା ରହଇ ତତ୍ପର ॥
ପ୍ରାଣ ଅପାନ ସମାନ ଉଦାନ ଯେ ବ୍ୟାନ ।
ଏହି ପଞ୍ଚ ବାୟୁ ଅଟେ ଶରୀରେ ପ୍ରଧାନ ॥
ହୃଦଦେଶୁଁ ପ୍ରାଣ ବହୁଅଛଇ ନିରତ ।
ଗୁହ୍ୟମଣ୍ଡଳେ ଅପାନବାୟୁ ପ୍ରବାହିତ ॥
ସମାନ ନାଭିଦେଶରେ, କଣ୍ଠରେ ଉଦାନ ।
ସର୍ବାଙ୍ଗ ଶରୀରେ ବ୍ୟାପି ରହିଅଛି ବ୍ୟାନ ॥
ନାଗ କୂର୍ମ କୃକର ଯେ ପୁଣି ଦେବଦତ୍ତ ।
ଧନଞ୍ଜୟ ମିଶି ଏହି ପଞ୍ଚବିଧ ଖ୍ୟାତ ॥
ଉଦ୍‌ଗାର କରଇ ନାଗ, କୂର୍ମ ଉନ୍ମୀଳନ ।
କୃକର କ୍ଷୁଧା ପିପାସା କରେ ଉଦ୍ଦୀପନ ॥
ଦେବଦତ୍ତ ବିଜୃମ୍ଭଣ କରେ ଘନ ଘନ ।
ଧନଞ୍ଜୟ ମୃତଦେହେ ଥାଏ ବିଦ୍ୟମାନ ॥
ଏହିବାୟୁ ସର୍ବନାଡ଼ୀ ମଧ୍ୟେ ଗତାଗତ ।
ସ୍ଥାନ କ୍ରିୟାଦିରେ ଭିନ୍ନ ନାମେ ଅଭିହିତ ॥

ପଞ୍ଚଭୂତାତ୍ମକ ପିଣ୍ଡ ହୋଇଛନ୍ତି ରଚନା ।
ଷଡ଼ାଶ୍ରୟ ସପ୍ତଧାତୁ କ୍ରମରେ ଯୋଜନା ॥
ନିର୍ମଳ ବେଦଜ୍ଞ ଯୋନି ଯେ ଚତୁର୍ବିଧାଧାର ।
ଶରୀର ନିର୍ମାଣଭାବ ଏମନ୍ତ ପ୍ରକାର ॥
ପୃଥ୍ୱୀ ଅପ ତେଜ ପୁଣି ବାୟୁ ଯେ ଆକାଶ ।
ଏହି ପଞ୍ଚଭୂତ ଦେହେଁ କରନ୍ତନ୍ତି ବାସ ॥
କଠିନତା ପୃଥ୍ୱୀ କର ଅଛଇ ଧାରଣ ।
ଦ୍ରବୀଭୂତ ଅପ ଅଟେ ପିଣ୍ଡର କାରଣ ॥
ତେଜ ଉଷ୍ଣତା ଗୁଣରେ ହୋଇଛନ୍ତି ପ୍ରକାଶ ।
ସଞ୍ଚରଣେ ବାୟୁ କ୍ରିୟା ଲଭଇ ଅଶେଷ ॥
ସର୍ବ ସୁଣିର ଆକାଶ କରେ ଅବକାଶ ।
ଶବ୍ଦ ଉପଲବ୍ଧି କରେ ଶ୍ରୋତ୍ରରେ ବିଶେଷ ॥
ଚର୍ମେ ବାୟୁ ସ୍ପର୍ଶକରେ, ନେତ୍ରେ ତେଜରୂପ ।
ନାସାରେ ପୃଥିବୀ, ରସନାରେ ଜଳାଧିପ ॥
ଏହିରୂପ ପଞ୍ଚଭୂତ କ୍ରିୟା ଶରୀରରେ ।
କର୍ମେନ୍ଦ୍ରିୟଦ୍ୱାରା ହୁଏ ନାନାଦି ପ୍ରକାରେ ॥
ମଧୁରାମ୍ଳ ଲବଣ ଯେ ତିକ୍ତ କଟୁ କଷା ।
ଷଡ଼ ଅଶ୍ରୟ ଦେହର ହୋଇଛନ୍ତି ଭରସା ॥
ଚର୍ବ୍ୟ ଚୋଷ୍ୟ ଲେହ୍ୟ ପେୟ ଚତୁର୍ବିଧାଧାରେ ।
ରସ ସଂଯୁକ୍ତ ହୁଅଇ ଅଶ୍ରୟ ବଳରେ ॥
ଶବ୍ଦ ସଂଜ୍ଞା ଦଶବିଧ ପ୍ରଣିଧାନ ଭାବ ।
ରସ ସଂଯୁକ୍ତ ତେଜରୁ ହୁଅଇ ଉଦ୍ଭବ ॥
ଶୁକ୍ଳ ରକ୍ତ କୃଷ୍ଣ ଧୂମ ପୀତ ଯେ ପାଣ୍ଡୁର ।
କପିଳ ମିଶ୍ରିତ ହୋଇ ଧାତୁର ଆଧାର ॥

ଅହାର ଦ୍ରବ୍ୟରୁ ରସ ହୁଅଇ ଗୃହୀତ ।
ରସରୁ ଶୋଣିତ, ଶୋଣିତରୁ ମାଂସ ଜାତ ॥
ମାଂସରୁ ଉତ୍ପନ୍ନ ସ୍ନାୟୁ, ସ୍ନାୟୁରୁ ଯେ ଅସ୍ଥି ।
ଅସ୍ଥି ମଧ୍ୟୁଁ ମଜ୍ଜା, ତହୁଁ ଶୁକ୍ରର ଉତ୍ପତ୍ତି ॥
ଏହିଭାବେ ଶରୀରର ହୋଇଛନ୍ତି ରଚନା ।
ପୁଂଲିଙ୍ଗ ସ୍ତ୍ରୀଲିଙ୍ଗ ଯୋନିଦ୍ୱୟ ଯେ ଘଟନା ॥
ଶୁକ୍ର ଶୋଣିତ ସଂଯୋଗ ହେଲେ ସମ୍ପାଦିତ ।
ଗର୍ଭ ଧାରଣ ବ୍ୟବସ୍ଥା ହୁଅଇ ଉଦିତ ॥
ହୃଦୟରେ ଅଗ୍ନି ପିତ୍ତବାୟୁ ସମ୍ମିଳନେ ।
ପ୍ରଜାପତି କର୍ମ ସର୍ବ ହୁଏ ସୁବିଧାନେ ॥
ଋତୁକାଳ ସଂଯୋଗରେ ପୁରୁଷର ରେତ ।
ନାରୀର ରଜମଧ୍ୟରେ ହୁଅଇ ନିହିତ ॥
ପ୍ରଥମଦିବସରେ ବିନ୍ଦୁ ରୂପକୁ ଧରଇ ।
ସପ୍ତଦିବସରେ ବୁଦ୍‌ବୁଦ ତେଜ ପ୍ରକାଶଇ ॥
ଏକପକ୍ଷ ମଧ୍ୟେ ହୁଏ ପିଣ୍ଡର ଆକାର ।
ଏକମାସେ ପିଣ୍ଡ ହୁଏ କଠିନ ନିକର ॥
ଦୁଇ ମାସେ ଶିରର ଯେ ହୁଅଇ ରଚନ ।
ଚତୁର୍ଥେ କପୋଳ ତହିଁ ହୁଅଇ ଯୋଜନ ॥
ତୃତୀୟମାସେ ପାଦ ଦେଶ ହୁଏଟି ସର୍ଜନ ।
ଚତୁର୍ଥେ ଗୁଲ୍ଫ ଜଠର କଟୀ ପ୍ରଦେଶନ ॥
ପୃଷ୍ଠଭାଗ ପଞ୍ଚମରେ ଷଷ୍ଠେ ମୁଖ ନାକ ।
ଚକ୍ଷୁ ଶ୍ରୋତ୍ର ଆଦି ସର୍ବ ହୁଏଟି ଉଦ୍ରେକ ॥
ସନ୍ଧି ମର୍ମ ସ୍ନାୟୁ ଶିରା ମଜ୍ଜା ଅସ୍ଥି ହୃଦ ।
ଷଷ୍ଠଚକ୍ର ଆଦି ସର୍ବ ହୋଇଯାଏ ମୁଦ ॥

ସପ୍ତମ ମାସେ ଜୀବନ ହୁଅଇ ସଂଯୁକ୍ତ ।
ଅଷ୍ଟମେ ସର୍ବ ଲକ୍ଷଣ ଜ୍ଞାନ ହୁଏ ପ୍ରାପ୍ତ ॥
ପିତୃରେତ ଅଧିକ୍ୟରେ ପୁରୁଷ ହୁଅଇ ।
ମାତୃରଜ ଅଧିକ୍ୟରେ ସ୍ତ୍ରୀଜନ୍ମ ଲଭଇ ॥
ଉଭୟର ରେତ ଯଦି ହୁଏ ସମଭାବ ।
ନପୁଂସକ ବ୍ୟକ୍ତି ତହୁଁ ହୁଅଇ ସମ୍ଭବ ॥
ମାତାର ଅହାର ପାନେ ନାଡ଼ୀ ସୂତ୍ରଗତେ ।
ପ୍ରାଣ ଧାରଣ କରଇ ଭ୍ରୂଣ ଅନ୍ତରତେ ॥
ଅଷ୍ଟବିଧ ପ୍ରକୃତି ଯେ ଷୋଡ଼ଷ ବିକାର ।
ଦେହେ ସମସ୍ତ ଧରଇ ପ୍ରପଞ୍ଚ ଅକାର । ୫୦ ।
ନବମରେ ନବ ଭାବ ହୁଏ ଜାଗରଣ ।
ଏକାକ୍ଷର ବ୍ରହ୍ମ ନାମ କରଇ ଚିନ୍ତନ ॥
ପୂର୍ବ ଜନ୍ମ ସ୍ମୃତି ସର୍ବ କରଇ ସ୍ମରଣ ।
ସଞ୍ଚିତ ଶୁଭାଶୁଭକର୍ମ ବିଧିମାନ ॥
"ଅସଂଖ୍ୟ ସହସ୍ର ଯୋନି ଭ୍ରମି ମୁଁ ନିରତେ ।
ନାନାବିଧ ଅହାର କରିଛି ହୃଷ୍ଟଚିତ୍ତେ ॥
ଅନେକ ଜୀବର ସ୍ତନ୍ୟପାନ ଅଛି କରି ।
ପରିତୁଷ୍ଟ ହୋଇ କ୍ଷୁଧା ତୃଷାକୁ ନିବାରି ॥
ଜନ୍ମ ମୃତ୍ୟୁ ଲଭି ଜନ୍ମହୁଏଁ ବାରମ୍ବାର ।
ପରିଜନ ତୋଷଣାର୍ଥେ କରଇ ତତ୍ପର ॥
ଶୁଭାଶୁଭକୁ ନ ଭାବି କରେଁ ନିତ୍ୟେ କର୍ମ ।
ସ୍ପନ୍ଦିତ ହୋଇ ନ ପରେଁ ନିଜ ଅପ୍ରଧର୍ମ ॥
ଏବେ ଏ ଜଠର ମଧ୍ୟେ ଏକାକୀ ହୋଇଣ ।
ଭୁଞ୍ଜୁଛି ଅପାର ଦୁଃଖ କର୍ମର ବନ୍ଧନ ॥

ତାତ ମାତ ଭ୍ରାତୃଭଗ୍ନୀ ପୁତ୍ରକଳତ୍ରାଦି ।
କେହି ହେଲେ ଏ ଦୁଃଖକୁ ନ ପାରିଲେ ଛେଦି ॥
କୀଟ କୃମିଗଣ ଲାଳ ରକ୍ତ ମଧ୍ୟେ ରହି ।
ନିରନ୍ତର ଦଂଶନ ଯେ କରୁଛନ୍ତି ଦେହୀ ॥
ମୂତ୍ର ପୁରୀଷ ଦୁର୍ଗମ ପୁରରେ ପ୍ରବେଶ ।
ଅବୃତ କରି ରହିଛି ଜରାୟୁ ବିଶେଷ ॥
ନରକଯନ୍ତ୍ରଣା ଭୋଗ ଗର୍ଭର ଭିତରେ ।
ବିବିଧ ଦୁଃଖ ଜନ୍ମାଏ କର୍ମ ଅନୁସାରେ ॥
ଏବେ କି ଉପାୟେ ଏଥୁଁ ହୋଇବି ନିସ୍ତାର ।
ଅହରହ ଭାବନା କରଇଁ ନିରନ୍ତର ॥
ଯେଉଁ ମହାପ୍ରଭୁ ହୃଦେ ଦେଲେ ମୋ ଚେତନା ।
ସେହି ଏ ଦୁଃଖରୁ କରିବେଟି ଉଦ୍ଧାରଣା ॥
ଯୋନିଦ୍ୱାରରୁ ଯେବେ ମୁଁ ହୋଇବି ବିମୁକ୍ତ ।
ଅସତ କ୍ରିୟାରେ କେବେଁ ନ ହେବି ଆସକ୍ତ ॥
ରାଗ ହିଂସା କାମ କ୍ରୋଧ ଲୋଭ ମୋହ ଆଦି ।
ବର୍ଜନ କରିବି ନିଶ୍ଚେ ଅଜ୍ଞାନ ଦୁର୍ବୁଦ୍ଧି ॥
ଲୋକପ୍ରବାଦରେ ଆଉ ନ ହୋଇବି ଭ୍ରମ ।
ସତ୍ସଙ୍ଗରେ ଭଜନ କରିବି ବ୍ରହ୍ମନାମ ॥
ପରଂବ୍ରହ୍ମଠାରେ ସଦା ପଶିବି ଶରଣ ।
ସେହି ମହାପ୍ରଭୁ ମୋର ଫେଡ଼ିବେ କଷଣ ॥
ତାହାଙ୍କ ନାମ ଭଜନ କରିବି ମୁଁ ନିତ୍ୟ ।
ଧର୍ମ ଉଦ୍ଦେଶ୍ୟରେ କର୍ମ କରିବି ନିରତ ॥
ଅଶୁଭ ବାସନା ସବୁ ହୋଇଯିବ କ୍ଷୟ ।
ବ୍ରହ୍ମକୃପାବଳେ ମୁକ୍ତ ହେବ ମୋ ନିଶ୍ଚୟ ॥

ଏବେ ଯଦ୍ୟପି ଗର୍ଭରୁ ହୋଇବି ବାହାର ।
ଅଷ୍ଟାଙ୍ଗଯୋଗ ସମାଧି କରିବି ନିରନ୍ତର । ୭୦ ।
ତହିଁ ବଳରେ ହୋଇବି ଭବରୁ ଉଦ୍ଧାର ।
ସୁଦୟା କରିବେ ମୋତେ କରୁଣାସାଗର ॥
ଯେବେ ଏଥର ଗର୍ଭରୁ ହୋଇବି ନିର୍ଗତ ।
ପ୍ରଭୁପାଦପଦ୍ମେ ଭକ୍ତି କରିବି ସତତ ॥
ସେହି ପାଦପଦ୍ମେ ସଦା ରଖିବି ବିଶ୍ୱାସ ।
ତାହାଙ୍କ ଅଙ୍କରେ ନାଶ ହେବ ମାୟାକ୍ଲେଶ ।
ସଂସାର ବିଷୟେ ବିଷେ ନ ହୋଇ ନିମଗ୍ନ ।
ଅଭୟ ପାଦକୁ ସଦା କରିବି ଚିନ୍ତନ
ଅଶୁଭ ବାସନା ନ କରିବ ଆକ୍ରମଣ ।
ଶୁଭ ପଥରେ ଅମ୍ଭର ହୋଇବ ପ୍ରୟାଣ ॥
ଜନନୀଗର୍ଭରେ ପୁନଃ ନ ହେବ ପ୍ରବେଶ ।
ବ୍ରହ୍ମଶରଣରେ ନାଶ ହେବ ନାନା କ୍ଲେଶ ।"
ଏହିରୂପ ସୁଚିନ୍ତନେ ଅଛି ଅନୁକ୍ଷଣେ ।
ପ୍ରସୂତ ବାୟୁ ପ୍ରବେଶ ହୁଅଇ ତତ୍କ୍ଷଣେ ॥
ଯୋନିଦ୍ୱାରପଥେ ନେଇ କରାଏ ନିବେଶ ।
ପୁନଃ ମହାଦୁଃଖ ଆସି ହୁଅଇ ପ୍ରବେଶ ॥
ମହତ ଦୁଃଖରେ ସର୍ବ ଚେତନା ହରଇ ।
ବହୁତ କ୍ଲେଶରେ ଗର୍ଭଗୃହୁଁ ବାହାରଇ ॥
ଧରଣୀ ଉପରେ ଦେହ ହୋଇଲେ ପତିତ ।
ବୈଷ୍ଣବୀ ମାୟାବୀ ବାୟୁ ଗ୍ରାସଇ ତ୍ୱରିତ । ୮୦ ।
ପୁନର୍ଜନ୍ମମୃତ୍ୟୁ କିମ୍ବା ଶୁଭାଶୁଭମାନ ।
ମର୍ତ୍ତ୍ୟରେ ପତିତ ହୋଇ ନାଶେ ସର୍ବ ଜ୍ଞାନ ॥

ଅଜ୍ଞାନରେ ବାଲ୍ୟକାଳେ କରଇ କୀଡ଼ନ ।
ଯୌବନେ ବନିତା ସଙ୍ଗେ ହୁଏ ନିମଗନ ॥
ଶେଷରେ କଳନ ଚିନ୍ତା କରେ ଅନୁକ୍ଷଣ ।
ଜ୍ଞାନଭକ୍ତିତତ୍ତ୍ୱ ସର୍ବ ହୁଏ ବିସ୍ମରଣ ॥
ଏହିରୂପେ ଜୀବଗଣ ଭ୍ରମନ୍ତି ସଂସାରେ ।
ସର୍ବଦା ଆସକ୍ତ ହୋଇ ବିଷୟ ଧନ୍ଦାରେ ॥
ବହୁଜନ୍ମ ସୁଭାଗ୍ୟରୁ ମାତୃଗର୍ଭଜ୍ଞାନ ।
ସୁସାଧୁ ସଙ୍ଗରେ ଯେହୁ କରେ ଅନୁଧ୍ୟାନ ॥
ପରଂବ୍ରହ୍ମରେ ଭକତି କରେ ନିରନ୍ତରେ ।
ସର୍ବଶ୍ରେଷ୍ଠ ପଦକୁ ପ୍ରାପ୍ତ ହୁଏ ସହଜରେ ॥
ତ୍ରୟବିଧ ଅଗ୍ନି ଶୀର୍ଣ୍ଣ କରଇ ଶରୀର ।
ଜ୍ଞାନ, ଦର୍ଶନ, କୋଷ୍ଠ ଯେ ତ୍ରିବିଧ ପ୍ରକାର ॥
ଜ୍ଞାନ କରେ ଶୁଭାଶୁଭ କର୍ମକୁ ଗ୍ରହଣ ।
ଦର୍ଶନାଗ୍ନି ଲଭ କରେ ରୂପର ଦର୍ଶନ ॥
କୋଷ୍ଠାଗ୍ନିରେ ଚତୁର୍ବିଧାହାର ହୁଏ ଜୀର୍ଣ୍ଣ ।
ହୃଦୟାଗ୍ନି ମୁଖେ ଗର୍ଭେ କରେ ଅଧିଷ୍ଠାନ ॥
ତ୍ରିମଳ ଦେହ ମଧ୍ୟରୁ ହୁଏ ସଦା ଜାତ ।
ନଖ, ଲୋମ, କେଶ ଯେ ତ୍ରିବିଧ ମଳ ଖ୍ୟାତ ।୯୦।
ବିନାଶଶୀଳ ଶରୀର ନୁହଇ ନିଷ୍ଠିତ ।
ପରମାତ୍ମା ପଦେ ସଦା ହୁଅ ନିମଜ୍ଜିତ ॥
ତ୍ରିତାପରେ ଆତ୍ମା ନ ହୋଇବ ଦହ୍ୟମାନ ।
ଦେହାନ୍ତରେ ପ୍ରାପ୍ତ ହେବ ନିତ୍ୟ ମୋକ୍ଷସ୍ଥାନ ॥
ଅଜ୍ଞାନ ଯଜ୍ଞାଦି କର୍ମ କର ପରିହାର ।
ଅଧ୍ୟାତ୍ମ ଯଜ୍ଞରେ ମଜ୍ଜିଥିବ ନିରନ୍ତର ॥

ଆତ୍ମା ଯଜମାନରୂପେ ରହୁ ବିଦ୍ୟମାନ ।
ମନ ବ୍ରହ୍ମାଙ୍କୁ କରିବ ଯଜ୍ଞେ ସଂଯୋଜନ ॥
ଲୋଭ ମୋହାଦି ପଶୁଙ୍କୁ କର ବଳିଦାନ ।
ସନ୍ତୋଷ ଧୃତି ଦୀକ୍ଷାଦି ହୃଦରେ ବହନ ॥
ବୁଦ୍ଧି ଇନ୍ଦ୍ରିୟଗଣଙ୍କୁ କର ଯଜ୍ଞପାତ୍ର ।
କର୍ମେନ୍ଦ୍ରିୟଗଣ ହବି କର ଯେ ଅଦ୍ଭୁତ ॥
ଶିରଊର୍ଦ୍ଧ୍ୱ କେଶ ସର୍ବ ଅଟେ ଅଗ୍ନିମାଳ ।
ଅନ୍ତର ମୁଖ ଯଜ୍ଞରେ ବେଦୀ ସୁବିଶାଳ ॥
ଜ୍ଞାନଯଜ୍ଞ ଆରାଧନା କର ସୁଜ୍ଞ ନର ।
ସର୍ବ କାମ୍ୟ କର୍ମ ନଷ୍ଟେ ହୋଇଯିବ ଦୂର ॥
ମାତୃଗର୍ଭ ଜ୍ଞାନଭକ୍ତି ସୂତ୍ରରେ ଧର ।
ଅନାୟାସେ ଭବସିନ୍ଧୁ ହୋଇବଟି ପାର ॥
ଚିତ୍ତ ପ୍ରଶାନ୍ତ ହୋଇବ ଚିନ୍ମୟ ଚିନ୍ତନେ ।
ସର୍ବଦା ରହିବ ଆତ୍ମା ଚିନ୍ମୟ ଅଧୀନେ ।୧୦୦।

ଇତି ଶ୍ରୀମଚ୍ଚିନ୍ମୟ ବ୍ରହ୍ମଗୀତାୟାଂ ମାତୃଗର୍ଭ ଜ୍ଞାନଯୋଗ
କଥନେ, ଶରୀରଉତ୍ପତ୍ତି ବିଷୟ ବର୍ଣ୍ଣନେ
ଅଜ୍ଞାନ ମାୟାମୋହ ବିନାଶନୋ
ନାମ ଅଷ୍ଟମୋଽଧ୍ୟାୟଃ ।

# ନବମ ଅଧ୍ୟାୟ

## ତତ୍ତ୍ୱବିବେକ ବିଜ୍ଞାନଯୋଗ

ତତ୍ତ୍ୱ ବିବେକ ପଦକୁ କର ଆଲୋଚନା ।
ଯହିଁରେ କ୍ଷୟ ହୋଇବ ସଂସାରବାସନା ॥
ଯେଉଁ ତତ୍ତ୍ୱରୁ ଜାତ ହୋଇଛି ସଂସାର ।
ଯାହାକୁ ଜାଣିଲେ ଆତ୍ମା ହୁଅଇ ଅମର ॥
ଅମରଗଣ ଯହିଁରେ ହୁଅନ୍ତି ଚକିତ ।
ଚକିତ ହୋଇ ଜ୍ଞାନୀଏ ବିଚାରନ୍ତି ତତ୍ତ୍ୱ ॥
କେ ଭାଷନ୍ତି ତତ୍ତ୍ୱ ଷଡ଼ବିଂଶ ସପ୍ତବିଂଶ ।
କେ ଅବା ଭାବନ୍ତି ତତ୍ତ୍ୱ ଅଟେ ଅଷ୍ଟାବିଂଶ ॥
ବେଦାନ୍ତ ବର୍ଣ୍ଣିଛନ୍ତି ଆତ୍ମା ପୁରୁଷ ନିର୍ଗୁଣ ।
ଚତୁର୍ବିଂଶ ତତ୍ତ୍ୱ ଅବ୍ୟକ୍ତରୁ ଉତପନ୍ନ ॥
ପଞ୍ଚବିଂଶ ତତ୍ତ୍ୱ ସାଂଖ୍ୟ କରେ ନିରୂପଣ ।
ଷଟ୍‌ବିଂଶତତ୍ତ୍ୱ କେ କରନ୍ତି ଅନୁମାନ ॥
ଦ୍ୱିବିଧ ଯେ ପଞ୍ଚବିଧ ଦ୍ୱୈତାଦ୍ୱୈତ ତତ୍ତ୍ୱ ।
ନାନାବିଧ ଭାବେ ମତ କରନ୍ତି ବିଖ୍ୟାତ ॥
ଏକମାତ୍ର ପରତତ୍ତ୍ୱ ଏକ ପରଂବ୍ରହ୍ମ ।
ତାହାଙ୍କ ବ୍ୟତୀତ ସର୍ବ ଅଟେ ମାୟାଭ୍ରମ ॥
ସେହି ଏକ ମହିମାରୁ ସମସ୍ତେ ଉତ୍ପନ୍ନ ।
ସ୍ଥିତ ଲଭି ପୁଣି ହୁଅନ୍ତି ସର୍ବେ ବିନାଶନ ॥
ଅବିନାଶୀ ପରମାତ୍ମା ବିନଷ୍ଟ ନୁହନ୍ତି ।
ତ୍ରିକାଳରେ ଏକ ଭାବେ ବିରାଜି ଅଛନ୍ତି ।

ତାଙ୍କ ମନ୍ତ୍ରମାରେ ହୃଷ୍ଟ ହୋଇଛନ୍ତି ରଚନା ।
ତ୍ରିଗୁଣାତ୍ମିକ ମାୟା ଯେ ତହିଁରୁ କଳ୍ପନା ॥
ସେହୁ ତେଜରୁ ଜନ୍ମିଲ ପ୍ରଥମେ ଆକାଶ ।
ଆକାଶରୁ ବାୟୁ, ତହୁଁ ତେଜେ ଯେ ପ୍ରକାଶ ॥
ତେଜରୁ ସମ୍ଭୂତ, ଜଳ ଜଳରୁ ଯେ କ୍ଷିତି ।
ଏ ପଞ୍ଚ ସୂକ୍ଷ୍ମ ଭୂତରୁ ସୃଷ୍ଟିର ଉତ୍ପତ୍ତି ॥
ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଯେ ତନ୍ମାତ୍ର ।
ପଞ୍ଚ ବିଷୟର ସୂକ୍ଷ୍ମେ ପ୍ରକାଶିତ କ୍ଷେତ୍ର ॥
ସତ୍ତ୍ୱ ରଜ ତମ ଯେତୁ ଅଟଇ ତ୍ରିଗୁଣ ।
ପଞ୍ଚଭୂତ ମଧ୍ୟେ ଏହୁ ହୋଇଛନ୍ତି ମିଶ୍ରଣ ॥
ଆକାଶ ସାତ୍ତ୍ୱିକ ଅଂଶରୁ ଯେ କର୍ଣ୍ଣେନ୍ଦ୍ରିୟ ।
ବାୟୁ ସାତ୍ତ୍ୱିକରୁ ଜାତ ହେଲା ଚର୍ମେନ୍ଦ୍ରିୟ ॥
ଅଗ୍ନି ସାତ୍ତ୍ୱିକ ଅଂଶରୁ ଚକ୍ଷୁ ହେଲା ଜାତ ।
ଜଳ ସାତ୍ତ୍ୱିକରୁ ହେଲା ରସନା ସମ୍ଭୂତ ॥
ପୃଥିବୀ ସାତ୍ତ୍ୱିକ ଅଂଶୁ ଜାତ ଘ୍ରାଣେନ୍ଦ୍ରିୟ ।
ଏହି ପଞ୍ଚ ଜ୍ଞାନେନ୍ଦ୍ରିୟ ହୋଇଲେ ନିଶ୍ଚୟ ॥
ଶବ୍ଦାଦ ପଞ୍ଚ ବିଷୟ ଶ୍ରୋତାଦ ଇନ୍ଦ୍ରିୟେ ।
ଜ୍ଞାନ ଉତ୍ପାଦନକ୍ରିୟା କରନ୍ତି ନିଶ୍ଚୟେ ॥
ଆତ୍ମା ଚୈତନ୍ୟରୁ ଜାତ ହୋଇ ଦେବଗଣ ।
କ୍ରିୟା ଅନୁସାରେ ନାମ କରନ୍ତି ଧାରଣ ॥
ଦିଗ ବାୟୁ ସୂର୍ଯ୍ୟ ପୁଣି ବରୁଣ ଅଶ୍ୱିନୀ ।
ଏହୁ ପଞ୍ଚ ଜ୍ଞାନେନ୍ଦ୍ରିୟ କ୍ରିୟା ଥାନ୍ତି ଘେନି ॥
ପଞ୍ଚ ତତ୍ତ୍ୱ ସମଷ୍ଟିର ସାତ୍ତ୍ୱିକ ଅଂଶରୁ ।
ଅନ୍ତଃକରଣ ଉତ୍ପନ୍ନ ହୋଇଛି ତହିଁରୁ ॥

ମନ ବୁଦ୍ଧି ଅହଙ୍କାର ଚିତ୍ତ ଚତୁର୍ବିଧ ।
ସ୍ୱ ସ୍ୱ କ୍ରିୟାରେ ସର୍ବଦା ହୁଅନ୍ତି ଅବାଧ ॥
ସଂଶୟ ନିଶ୍ଚୟ ଅହଙ୍କାର ଯେ ଚିନ୍ତନ ।
ଅନ୍ତରରେ ଏହି ଚତୁର୍ବିଧ ହୁଏ ଜ୍ଞାନ ॥
ଚନ୍ଦ୍ର ଚତୁର୍ମୁଖ ଯେହୁ ଶଙ୍କର ଅଚ୍ୟୁତ ।
ଅନ୍ତଃକରଣର ଦେବ ଅଟନ୍ତି ବଖ୍ୟାତ ॥
ପଞ୍ଚ ତତ୍ତ୍ୱମାନଙ୍କର ରାଜସ ଅଂଶରୁ ।
କର୍ମେନ୍ଦ୍ରିୟଗଣ ଜାତ ହୋଇଲେ ତହିଁରୁ ॥
ଆକାଶ ରାଜସ ଅଂଶୁ ବାଗିନ୍ଦ୍ରିୟ ଜାତ ।
ବାୟୁର ରାଜସ ଅଂଶୁ ପାଣି ଯେ ସମ୍ଭୂତ ॥
ଅଗ୍ନି ରାଜସଗୁଣରୁ ଜାତ ହେଲ ପାଦ ।
ଜଳରୁ ଉପସ୍ଥ, ପୁନଃ ପୃଥ୍ୱୀ ଅଂଶୁ ଗୁଦ ॥
ବହ୍ନି ଇନ୍ଦ୍ର ଉପେନ୍ଦ୍ର ଯେ ଯମ ପ୍ରଜାପତି ।
କର୍ମେନ୍ଦ୍ରିୟ ଦେବରୂପେ ଥାନ୍ତି ଅଧିପତି ॥
ବଚନାଦାନ ଗମନ ବିସର୍ଗ ଆନନ୍ଦ ।
ଏହି ପଞ୍ଚ ବିଷୟରେ ହୁଅନ୍ତି ସାନନ୍ଦ ॥
ପଞ୍ଚ ତତ୍ତ୍ୱ ସମଷ୍ଟିର ରାଜସ ଅଂଶରୁ ।
ପ୍ରାଣପଞ୍ଚକ ସମ୍ଭୂତ ହେଲ ତନ୍ମଧ୍ୟରୁ ॥
ସଦ୍ୟୋଜାତ ବାମଦେବ ତତ୍ପୁରୁଷ ଆଦି ।
ଅଘୋର ଘୋର ଯେ ଦେବ ଅଟନ୍ତି ଅନାଦି ॥
ପଞ୍ଚଭୂତ ଅଂଶ ଯେହୁ ତାମସସ୍ୱରୂପ ।
ପଞ୍ଚୀକରଣ ତହିଁରେ ହୁଅଇ ଅଲୋପ ॥
ପଞ୍ଚ ମହାଭୂତ ତହୁଁ ହୁଅଇ ଉତ୍ପନ୍ନ ।
ଭୂତେ ଭୂତ ମିଶ୍ରଣରେ ସ୍ଥୂଳତ୍ୱ ଧାରଣ ॥

ଅଜ୍ଞାନର ଆବରଣ ବିକ୍ଷେପ ଶକ୍ତିରେ ।
ପିଣ୍ଡ ବ୍ରହ୍ମାଣ୍ଡ ଯେ ଗଢ଼ା ହୋଇଛନ୍ତି ବିଧିରେ ॥
ବ୍ରହ୍ମପ୍ରତିବିମ୍ବ ଆତ୍ମା ଜୀବ ଯେ ଈଶ୍ୱର ।
ଚେତନ କରୁଅଛନ୍ତି ସର୍ବ ଚରାଚର ॥
ଜୀବ ଈଶ୍ୱର ନାମ ଯେ ଅଟଇ ମାୟିକ ।
ନିର୍ମାୟୀ ପ୍ରଭୁ ଅଟନ୍ତି ବ୍ରହ୍ମ ସଚ୍ଚିଦେକ ॥
ସେହି ପରଂବ୍ରହ୍ମ ସର୍ବ ତତ୍ତ୍ୱରୁ ଅତୀତ ।
ଏକମାତ୍ର ପରଂତତ୍ତ୍ୱ ପଦରେ ନିର୍ଦ୍ଦିଷ୍ଟ ॥
ତାହାଙ୍କ ଆଶ୍ରୟେ ଔପାଧିକ ତତ୍ତ୍ୱମାନ ।
ଏକାଧିକ ପଦରେ ସେ ହୁଅନ୍ତି ଗଣନ ॥
ଅନାତ୍ମଜ୍ଞ ବ୍ୟକ୍ତ କରି ନ ପାରେ ବିଚାର ।
ଉପାଧି ଭେଦରେ ତତ୍ତ୍ୱ ଭାବଇ ନିକର ।୪୦।
ନିର୍ବିଶେଷ ଜ୍ଞାନପଦ ନ ହୋଇ ଗୋଚର ।
ସବିଶେଷ ଜ୍ଞାନେ ମଜ୍ଜିଥାଇ ନିରନ୍ତର ॥
ଅଦ୍ୱୈତ ବିଶୁଦ୍ଧ ତତ୍ତ୍ୱ ନ କରି ଭଜନ ।
ଦ୍ୱୈତଭାବରେ କରଇ ଅନ୍ୟ ଦେବାର୍ଚ୍ଚନ ॥
ପୁରୁଷ ପ୍ରକୃତି ଶିବଶକ୍ତି ଭାବି ଧେନ ।
ନିରନ୍ତରେ ଭ୍ରମଣ କରଇ ମାୟା ଯୋନି ॥
କେହି ବା ଭାବନ୍ତି ବ୍ରହ୍ମା ବିଷ୍ଣୁ ମହେଶ୍ୱର ।
ଏହି ତ୍ରୟ ତତ୍ତ୍ୱ ଅଟେ ସୃଷ୍ଟି ମଧ୍ୟେ ସାର ॥
ପଞ୍ଚଭୂତ ତତ୍ତ୍ୱ କେହୁ କରିଥାନ୍ତି ସ୍ଥିର ।
ସୃଷ୍ଟିର କାରଣରୂପେ କରନ୍ତି ବିଚାର ॥
ସର୍ବ ତତ୍ତ୍ୱ ହୋଇଅଛି ଉପାଧିଜଡ଼ିତ ।
ବିନାଶପଥରେ ସର୍ବେ ହୁଅନ୍ତି ଧାବିତ ॥

ମାୟା ଅବିଦ୍ୟା ଉପାଧିଠାରୁ ଯେ ଅତୀତ ।
ନିର୍ଗୁଣ ପରମ ବ୍ରହ୍ମ ନାମେ ସେ ବିଖ୍ୟାତ ॥
ସେହି ଏକ ମାତ୍ର ତତ୍ତ୍ୱ ପରମ କାରଣ ।
ସର୍ବାଶ୍ରୟଙ୍କ ଆଶ୍ରୟ ସର୍ବଜୀବପ୍ରାଣ ॥
ବ୍ରହ୍ମ ମହିମାରୁ ସର୍ବେ ହୁଅନ୍ତି ଉତ୍ପନ୍ନ ।
ସେହି ମହିମାକୁ କରି ହୁଏଇ ବର୍ଣ୍ଣନ ॥
ଅଗ୍ନିରୁ କ୍ଷୁଦ୍ର ସ୍ଫୁଲିଙ୍ଗ ଯେସନେ ହୁଏ ଜାତ ।
ବ୍ରହ୍ମମହିମାରୁ ତେସନେ ବ୍ରହ୍ମାଣ୍ଡ ଉଦ୍ଭବ ॥
ଭୂଃ ଭୁବଃ ସ୍ୱଃ ମହଃ ଜନଃ ତପଃ ସତ୍ୟଲୋକ ।
ଊର୍ଦ୍ଧ୍ୱ ଭୁବନ ଏ ଅଟଇ ସପ୍ତକ ॥
ଅତଳ ବିତଳ ସୁତଳ ଯେ ରସାତଳ ।
ତଳାତଳ ମହାତଳ ଆଉ ପାତାଳ ॥
ଏହି ସପ୍ତଲୋକ ଛନ୍ତି ଅଧଅଧୋଦେଶେ ।
ବ୍ରହ୍ମାଣ୍ଡ ଭୁବନ ହୋଇଅଛି ଚତୁର୍ଦ୍ଦଶେ ॥
ଚତୁର୍ବିଧ ସ୍ଥୂଳ ଦେହ ବହି ଜୀବଗଣ ।
ଅଧ ଊର୍ଦ୍ଧ୍ୱଗତିଦ୍ୱାରି କରନ୍ତି ଭ୍ରମଣ ॥
କେତେ ବା ସୂକ୍ଷ୍ମ ଶରୀରେ କାରଣ ଶରୀରେ ।
କର୍ମବଶେ ଭ୍ରମଣ କରନ୍ତି ନିରନ୍ତରେ ॥
ବ୍ରହ୍ମା ଇନ୍ଦ୍ର ବିଷ୍ଣୁ ରୁଦ୍ର ରବି ଚନ୍ଦ୍ର ଆଦି ।
ଅଷ୍ଟ କୁଳାଚଳ ସପ୍ତ ସିନ୍ଧୁ ଗଗନାଦି ॥
ବ୍ରହ୍ମାଣ୍ଡ ମଧ୍ୟରେ ରହିଥାନ୍ତି ବିଦ୍ୟମାନ ।
ପ୍ରଳୟକାଳରେ ସର୍ବେ ହୁଅନ୍ତି ବିଲୀନ ॥
ଅଶେଷ କୋଟି ବ୍ରହ୍ମାଣ୍ଡ ଏହିରୂପେ ଖ୍ୟାତ ।
ବ୍ରହ୍ମ ମହିମାରୁ ହୋଇଅଛନ୍ତି ଉଦ୍ଭବ ॥

ମାନବଶରୀରୁ ଯେସନ୍ତେ କେଶ ଲୋମ ଜାତ ।
ଯେସନେକ ତୃଣ ଲତା ପୃଥ୍ୱୀରୁ ସମ୍ଭୂତ ॥
ସେହିରୂପ ସହିମାରୁ ଅଶେଷ ଜଗତ ।
ଅଛରହି ହେଉଅଛୁ ସୃଷ୍ଟି ଯେ ବିଖ୍ୟାତ । ୨୦ ।
ବିକାର ~~ଯେ~~ ବିବର୍ତ୍ତିନୀ ହୁନ୍ତି ପରଂବ୍ରହ୍ମ ।
ନିର୍ବିକାରଭାବେ ରହିଥାନ୍ତି ପରଂଧାମ ॥
ଅବିନାଶୀ ପରଂତତ୍ତ୍ୱ ପ୍ରଭୁ ପରମାତ୍ମା ।
ସକଳ ଭୂତର ସେହୁ ଅଟନ୍ତି ଅଧ୍ୟାତ୍ମା ॥
ସର୍ବଜନସାକ୍ଷୀ ସର୍ବକାରଣ କାରଣ ।
ସେହି ପରମ ତତ୍ତ୍ୱକୁ କର ନିରୂପଣ ॥
ବିବେକ ବୈରାଗ୍ୟଯୁକ୍ତ ସାଧନ ସମ୍ପତ୍ତି ।
ମୁମୁକ୍ଷୁପଦରେ ଯାର ଜନ୍ମିଥାଏ ରତି ॥
ସାଧନ ଚତୁଷ୍ଟୟରେ ହେଲେ ଅଧିକାରୀ ।
ଏକ ଅଦ୍ୱିତୀୟ ତତ୍ତ୍ୱ ପଦ ରହେ ସ୍ମରି ॥
ପରଂବ୍ରହ୍ମନିଷ୍ଠ ତତ୍ତ୍ୱଜ୍ଞାନୀ ଗୁରୁପାଦେ ।
ସାଷ୍ଟାଙ୍ଗେ ପ୍ରଣମି ସେବା କରିଲେ ଆନନ୍ଦେ ।
ଶ୍ରଦ୍ଧାଭକ୍ତି ସହି କଲେ ଗୁରୁଙ୍କୁ ପ୍ରଶ୍ନ ।
ସୁକୃପାରେ ଗୁରୁ ଜ୍ଞାନ କରନ୍ତି ପ୍ରଦାନ ॥
ଅଧ୍ୟାରୋପ ଅପବାଦ ନ୍ୟାୟର ମାର୍ଗରେ ।
ବ୍ରହ୍ମତତ୍ତ୍ୱ ଉପଦେଶ ଦିଅନ୍ତି ହର୍ଷରେ ॥
ତତ୍ତ୍ୱ ବିବେକ ପଦ ଯେ ହୁଅଇ ଗୋଚର ।
ଏକ ପରମାତ୍ମା ସର୍ବ ଜଗତର ସାର ॥
ଅସାର ଅଟଇ ଦୃଶ୍ୟ ପ୍ରପଞ୍ଚ ଜଗତ ।
ଅକ୍ଷରସ୍ୱରୂପ ଆତ୍ମା ନିଜଗତେ ସତ । ୭୦ ।

ସ୍ଥୂଳ ସୂକ୍ଷ୍ମ କାରଣ ଯେ ତ୍ରିବିଧ ଶରୀର ।
ତଥିମଧ୍ୟେଁ ପରମାତ୍ମା ଅଟଇ ଅନ୍ତର ॥
ପଞ୍ଚକୋଷ ତ୍ରୟାବସ୍ଥା ମଧ୍ୟେ ସାକ୍ଷିରୂପେ ।
ବିରାଜିତ ହୋଇଛନ୍ତି ଆତ୍ମା ଯେ ନିର୍ଲିପ୍ତେ ॥
ସଚ୍ଚିଦାନନ୍ଦସ୍ୱରୂପ ଲକ୍ଷଣରେ ସ୍ଥିତ ।
ସର୍ବ ମାୟା ଉପାଧିରୁ ଅଟନ୍ତି ରହିତ ॥
ମାୟା ଅଜ୍ଞାନ କାରଣ ସମଷ୍ଟି ବ୍ୟଷ୍ଟିରେ ।
ଆଭାସ ଚୈତନ୍ୟେ ଆତ୍ମା ଦୃଶ୍ୟ ହେଯ ଭେଦରେ ॥
ଅଜ୍ଞାନ ଅଟଇ ସତ ଅସତ ସ୍ୱରୂପ ।
ଅନିର୍ବଚନୀୟ ଅବ୍ୟକ୍ତ ଅଟେ ସେ ଅପାପ ॥
ସଂସାର ବନ୍ଧନ ମୂଳ କାରଣ ଉପାଧି ।
ବ୍ରହ୍ମଜ୍ଞାନ ତତ୍ତ୍ୱପଦେ ଅଟଇ ବିରୋଧୀ ॥
ଅଜ୍ଞାନ ସମଷ୍ଟି ଉପହିତ ଯେ ଚୈତନ୍ୟ ।
ଈଶ୍ୱରପଦରେ ସେହୁ ଅଟନ୍ତି ଯେ ଗଣ୍ୟ ॥
ସର୍ବଜ୍ଞାତା ସର୍ବେଶ୍ୱର ସମସ୍ତ ନିୟନ୍ତା ।
ସୃଷ୍ଟି ସ୍ଥିତି ଲୟପଦେ କରୁଥାନ୍ତି ଚିନ୍ତା ॥
ଅଜ୍ଞାନର ବ୍ୟଷ୍ଟିଗତ ଚୈତନ୍ୟ ସ୍ୱରୂପ ।
ଅଳ୍ପଜ୍ଞ ସେ ପ୍ରାଜ୍ଞ ଆତ୍ମା ଏକା ଜ୍ଞାନାଧିପ ॥
ଅଜ୍ଞାନ କାରଣୁ ଜାତ ସୂକ୍ଷ୍ମ ଯେ ଶରୀର ।
ଅପଞ୍ଚୀକୃତ ଭୂତରୁ ହୋଇଛି ସଞ୍ଚାର ।୮୦।
ଜ୍ଞାନେନ୍ଦ୍ରିୟ କର୍ମେନ୍ଦ୍ରିୟ ପଞ୍ଚ ପ୍ରାଣ ମନ ।
ବୁଦ୍ଧି ସହ ସପ୍ତଦଶ କଳାରେ ଗଠନ ॥
ସୁଖ ଦୁଃଖ ଭୋଗ ସର୍ବ କରେ ନିରନ୍ତରେ ।
ଇହ ପର ଜନ୍ମେ ଗତ କରଇ ନିର୍ଭରେ ॥

ସୂକ୍ଷ୍ମ ସମଷ୍ଟି ଚୈତନ୍ୟ ଉପହିତ ଯେହୁ ।
ସୂତ୍ରାତ୍ମା ହିରଣ୍ୟଗର୍ଭ ନାମ ଅଟେ ସେହୁ ॥
ଜ୍ଞାନଇଚ୍ଛା କ୍ରିୟାଶକ୍ତି କରଇ ଧାରଣ ।
ଇନ୍ଦ୍ରିୟଗଣ ସକଳ କରଇ ରକ୍ଷଣ ॥
ସୂକ୍ଷ୍ମ ଶରୀରର ବ୍ୟଷ୍ଟି ଗତେ ଉପହିତ ।
ଚୈତନ୍ୟ ନାମ ତୈଜସ ହୁଅଇ ବିଖ୍ୟାତ ॥
ପଞ୍ଚୀକୃତ ପଞ୍ଚ ମହାଭୂତରୁ ସମ୍ଭୂତ ।
ସ୍ଥୂଳଶରୀର ନାମରେ ହୋଇଛି ଉଦ୍ଭୂତ ॥
ଶବ୍ଦାଦି ବିଷୟ ପଞ୍ଚେ ହୋଇଣ ଜଡ଼ିତ ।
ଷଡ଼୍‌ବିକାରରେ ସଦା ହୋଇଛି ସଂଯୁତ ॥
ରଜ ବୀର୍ଯ୍ୟରେ ଶରୀର ହୁଅଇ ଗଠନ ।
କର୍ମଜନ୍ୟ ସୁଖ ଦୁଃଖ ଭୋଗ ଆୟତନ ॥
ସ୍ଥୂଳଶରୀର ସମଷ୍ଟି ମଧ୍ୟେ ଉପହିତ ।
ବୈଶ୍ୱାନର ବିରାଟ ଯେ ଚୈତନ୍ୟ ଶୋଭିତ ॥
ସର୍ବ ଦେହ ଅଭିମାନୀ ହେତୁ ବୈଶ୍ୱାନର ।
ନାନାପ୍ରକାର ଶରୀରେ ବିରାଟ ଆଧାର । ୧୦ ।
ସ୍ଥୂଳ ବ୍ୟଷ୍ଟିଗତ ଉପହିତ ନାମ ବିଶ୍ୱ ।
ସୂକ୍ଷ୍ମଦେହରେ ମମତା ନ ରଖେ ସର୍ବସ୍ୱ ॥
ଅନ୍ନବିକାରରୁ ଜାତ ଅଟେ ସ୍ଥୂଳଦେହ ।
ଅନ୍ନରସରେ ସଂବୃଦ୍ଧ ହୁଅଇ ଯେ ଇହ ॥
ଅନ୍ତେ ବିଲୀନ ହୁଅଇ ଏହି ପୃଥିବୀରେ ।
ଅନ୍ନମୟ କୋଷ ନାମ ରହିଛି ସ୍ଥୂଳରେ ॥
ଜ୍ଞାନେନ୍ଦ୍ରିୟ ବିଷୟକୁ ହୁଏ ପରିଜ୍ଞାତ ।
ଅବସ୍ଥାର ନାମ ତେଣୁ ଅଟଇ ଜାଗ୍ରତ ॥

ପ୍ରାଣମୟ ମନୋମୟ ସେ ବିଜ୍ଞାନମୟ ।
ଏହି ତ୍ରିବିଧ କୋଷ ଯେ ସୂକ୍ଷ୍ମର ଆଶ୍ରୟ ॥
ପ୍ରାଣ କ୍ରିୟାଶକ୍ତି କର୍ମ କରେ ସମ୍ପାଦନ ।
ମନଇଚ୍ଛା ଜ୍ଞାନେନ୍ଦ୍ରିୟେ ହୁଅଇ ମିଳିତ ॥
ବିଜ୍ଞାନ ଯେ ଜ୍ଞାନବୁଦ୍ଧି ହୁଅଇ ପ୍ରାପତ ।
ଜ୍ଞାନେନ୍ଦ୍ରିୟ ବିଷୟକୁ କରଇ ନିଶ୍ଚିତ ॥
ଦୃଷ୍ଟ ଶ୍ରୁତାଦି ବିଷୟ ଜାଗ୍ରତ ବାସନା ।
ନିଦ୍ରାବସ୍ଥାରେ ପ୍ରତୀତ ହୁଏ ଯେ କଳ୍ପନା ॥
ସୂକ୍ଷ୍ମ ଶରୀର ଯେ ସେହି ନାମ ସ୍ୱପ୍ନାବସ୍ଥା ।
କର୍ତ୍ତା କରଣ କର୍ମର ହୋଇଛି ବ୍ୟବସ୍ଥା ॥
ଆନନ୍ଦମୟ କୋଷ ଯେ କାରଣ ଶରୀରେ ।
ଅବିଦ୍ୟାଦି ପ୍ରିୟବୃତ୍ତି ଭୋଗେ ନିରନ୍ତରେ । ୧୦୦ ।
ଅହଂପଦେ ଅଜ୍ଞ ହୋଇ ସୁଷୁପ୍ତାବସ୍ଥାରେ ।
ସୁଖି ସ୍ୱଚ୍ଛନ୍ଦରେ ନିଦ୍ରା ଯାଏ ପ୍ରଗାଢ଼ରେ ॥
ତ୍ରିବିଧ ଶରୀରେ ତ୍ରୟାବସ୍ଥା ପଞ୍ଚକୋଷ ।
ମିଳିତ ହୋଇ ସଂସାର ହୋଇଛି ପ୍ରକାଶ ॥
ଅଜ୍ଞାନାଦି ସ୍ଥୂଳ ସୂକ୍ଷ୍ମ କାରଣ ଶରୀରେ ।
ଏକ ଅନେକ ବୃଦ୍ଧିରେ ସମଷ୍ଟି ବ୍ୟଷ୍ଟିରେ ॥
ବିଶୁଦ୍ଧ ସତ୍ତ୍ୱରେ ପୁନଃ ମଳିନ ସତ୍ତ୍ୱରେ ।
ଆଭାସ ଚୈତନ୍ୟ ପ୍ରକାଶିତ ସର୍ବଠାରେ ॥
ଭାବ ଗୁଣ କ୍ରିୟାମତେ ହୁଅନ୍ତି ଭିନ୍ନ ଭିନ୍ନ ।
ଉପାଧିରେ ଉପହିତ ହୁଏ ଯେ ଚୈତନ୍ୟ ॥
ଅଜ୍ଞାନାଦି ଉପହିତ ଯେ ଚୈତନ୍ୟ ଆତ୍ମା ।
ତହିଁର ଆଧାର ଆଶ୍ରୟ ଯେ ପରମାତ୍ମା ॥

ଅନଉପହୃତ ସେ ଚୈତନ୍ୟ ପରବ୍ରହ୍ମ ।
କୁଟସ୍ଥ ଅବ୍ୟକ୍ତ ସ୍ୱପ୍ରକାଶିତ ଗୁଣ ଧର୍ମ ॥
ଘଟାକାଶ ମଠାକାଶ ବନବୃକ୍ଷାକାଶ ।
ଜଳଜଳାଶୟାକାଶ ପଟର ମହାକାଶ ॥
ମହାକାଶ ଯେସନେ ସର୍ବ ଆକାଶ ଆଧାର ।
ନିର୍ଲିପ୍ତ ହୋଇଣ ବ୍ୟାପି ଥାଏ ଚରାଚର ॥
ସେହିରୂପ ସର୍ବାଶ୍ରୟ ପରଂବ୍ରହ୍ମ ବିଭୁ ।
ଉପହୃତ ଚୈତନ୍ୟର ସର୍ବାଧାର ପ୍ରଭୁ ॥
ସ୍ୱୟଂ ଅନଉପହୃତ ଚିନ୍ମୟସ୍ୱରୂପ ।
ସର୍ବକାରଣ କାରଣ ଜୀବେଶ୍ୱରାଧିପ ॥
ସର୍ବାବଭାସକ ନିତ୍ୟ ଶୁଦ୍ଧ ବୁଦ୍ଧ ମୁକ୍ତ ।
ମାୟା ପ୍ରକୃତି ବିକାରେ ନୁହନ୍ତି ଅସକ୍ତ ॥
ସଚ୍ଚିତ୍ ସ୍ୱରୂପରେ ସଦା ଥାନ୍ତି ବିଦ୍ୟମାନ ।
ଅଲେଖ ଅବ୍ୟକ୍ତ ପରଂବ୍ରହ୍ମ ସନାତନ ॥
ସେହି ଏକ ଅଦ୍ୱିତୀୟ ତତ୍ତ୍ୱ ପରମାତ୍ମା ।
ତାଙ୍କ ମହିମାରେ ଜୀବାଧିକ ସର୍ବ ଆତ୍ମା ॥
ମହା ମହିମାନ୍ ତ ସେ ମହିମାସାଗର ।
ବେଦବେଦାନ୍ତେ ସେ ତତ୍ତ୍ୱ ହୁଅଇ ଗୋଚର ॥
ଏକ ଏବ ଅଦ୍ୱିତୀୟ ବିଜ୍ଞାନ ଆନନ୍ଦ ।
ପ୍ରଜ୍ଞାନ ଘନ ସ୍ୱରୂପ ବ୍ରହ୍ମ ପୂର୍ଣ୍ଣାନନ୍ଦ ॥
ତତ୍ତ୍ୱମସି ଆଦି ମହାବାକ୍ୟରେ ବର୍ଣ୍ଣିତ ।
ଲକ୍ଷ୍ୟାର୍ଥ ପଦରେ ସେହି ଏକ ସୁଶୋଭିତ ।
ଜୀବ ଇଶ୍ୱରର ଭେଦ ହୁଏ ନିବାରଣ ।
ଏକ ପରଂବ୍ରହ୍ମ ସର୍ବକାରଣ କାରଣ ॥

ଅଧ୍ୟାରୋପ ଅପବାଦେ ତତ୍ତ୍ୱାର୍ଥ ଶୋଧନ ।
ଉଭୟଙ୍କ ବ୍ରହ୍ମପଦର ହୁଏ ସମୀଚୀନ ॥
ଅଜ୍ଞାନାଦି ସମଷ୍ଟି ତହିଁର ଉପହିତ ।
ସର୍ବଜ୍ଞ ଈଶ୍ୱର ଆଦି ଚୈତନ୍ୟ ଯେ ଖ୍ୟାତ ॥
ସର୍ବମିଳନରେ ହୁଏ ତତ୍‌ପଦ ବାଚ୍ୟାର୍ଥ ।
ବିଶ୍ୱମୟ ବ୍ରହ୍ମ ବୋଲି ହୁଅଇ ଭାବାର୍ଥ ॥
ଏହି ଉପାଧିର ଉପହିତ ଯେ ଆଧାର ।
ଅନୁପହିତ ଚୈତନ୍ୟ ଶୁଦ୍ଧ ନିର୍ବିକାର ॥
ତତ୍‌ପଦଲକ୍ଷ୍ୟାର୍ଥ ପଦେ ହୋଇଛି ସୁସ୍ଥିର ।
ଅଲକ୍ଷ୍ୟ ଅନାମ ବ୍ରହ୍ମ ଚିନ୍ମୟ ଆକାର ॥
ଅଜ୍ଞାନାଦି ସ୍ଥୂଳସୂକ୍ଷ୍ମ ବ୍ୟଷ୍ଟି ଉପହିତ ।
ଅଲ୍ପଜ୍ଞ ଜୀବ ଚୈତନ୍ୟ ତହିଁ ପ୍ରଭାନ୍ୱିତ ॥
ତ୍ୱଂପଦ ବାଚ୍ୟାର୍ଥ ନାମ ଅଟଇ ତାହା ।
ସର୍ବଜ୍ଞପଦରେ ସେହି ଅଟେ ଅଗୋଚର ॥
ଉପାଧିବିହୀନ ଯେହୁ ଚୈତନ୍ୟ ବିଶୁଦ୍ଧ ।
ଯେଉଁ ଅଶ୍ରୟରେ ଛନ୍ତି ଭବମାୟାବଦ୍ଧ ॥
ସେହି ଏକ ପରଂବ୍ରହ୍ମ ତ୍ୱଂପଦ ଲକ୍ଷ୍ୟାର୍ଥ ।
ମାୟୋଽବିଦ୍ୟା-ଉପାଧିକ ଚୈତନ୍ୟ ବାଚ୍ୟାର୍ଥ ॥
ଲକ୍ଷ୍ୟାର୍ଥରେ ଜୀବେଶ୍ୱର ହୁଅଇ ଅଭେଦ ।
ସଂସାର କାରଣ ଆତ୍ମା ହୁଏ ନିର୍ବିପଦ ॥
ନିଷ୍କାମ ଭକତ ଯୋଗ ଦୃଢ଼ ଭାବନାରେ ।
ଆତ୍ମାର ଐକ୍ୟ କରିଲେ ପରମ ବ୍ରହ୍ମରେ ॥
ଏହି ମହାବାକ୍ୟ ପଦ ହୁଅଇ ପ୍ରାପତ ।
ଅଭୟ ବ୍ରହ୍ମ ପାଦରେ ରହଇ ନିଶ୍ଚିତ ॥

ସ୍ୱଗତ ଯେ ସଜାତୀୟ ବିଜାତୀୟ ଭେଦେ ।
ଭେଦଶୂନ୍ୟ ନିବାରିତ ଏକ ବ୍ରହ୍ମ ପଦେ ॥
ଅଖଣ୍ଡ ଅବ୍ୟୟ ବ୍ରହ୍ମ ଅରୂପ ଅନାଦି ।
ଦେହାତୀତ ରୂପ ନ ପାରଇ ଭେଦି ॥
ଦୃଶ୍ୟ ପ୍ରପଞ୍ଚାଦି ବସ୍ତୁ ମଧ୍ୟରୁ ଅତୀତ ।
ଚିଦାନନ୍ଦ ସ୍ୱରୂପ ତତ୍ତ୍ୱ ପଦରେ ଲକ୍ଷିତ ॥
ସମ୍ବନ୍ଧ ତ୍ରୟ ଯେ ବିଶେଷଣର ବିଶେଷ ।
ଲକ୍ଷ୍ୟ ଲକ୍ଷଣ ପଦର ଲକ୍ଷ୍ୟର ବିଶ୍ୱାସ ॥
ସମାନାଧିକରଣ ସମ୍ବନ୍ଧ ତତ୍ତ୍ୱ ପଦେ ।
ପରୋକ୍ଷାପରୋକ୍ଷ ବାଚ୍ୟ ତେଜି ନିର୍ବିବାଦେ ॥
ଅବିରୋଧ ଚୈତନ୍ୟ ଲକ୍ଷ୍ୟାଂଶ ହୁଏ ସ୍ଥିର ।
ମହା ବାକ୍ୟରେ ବର୍ଣ୍ଣିତ ଏକ ବ୍ରହ୍ମସାର ॥
ସେହି ପରଂବ୍ରହ୍ମ ତତ୍ତ୍ୱ କର ଯେ ଅଭ୍ୟାସ ।
ମନର ବିକଳ୍ପ ସର୍ବ ହୋଇବ ବିନାଶ ॥
ହୃଦରୁ ଭୋଗବାସନା ହୋଇପାଏ କ୍ଷୟ ।
ଚିଦାନନ୍ଦ ଚିତ୍ତରେ ଶୁଦ୍ଧ ହୁଅଇ ବିଲୟ ॥
ବିଶୁଦ୍ଧ ଜ୍ଞାନ ଭକତ ଯୋଗସାଧନାରେ ।
ବିଶୁଦ୍ଧ ଅଦ୍ୱୈତତତ୍ତ୍ୱ ଭଜ ନିରନ୍ତରେ ॥
ଅଭିଧାନ ଅଭିଧେୟ ମାର୍ଗରୁ ଉଦ୍ଧର ।
ନିବାସ କରିବ ସୁଖେ ବ୍ରହ୍ମାନନ୍ଦପୁର ॥
ତ୍ରିବିଧ କର୍ମ ଅଗାମୀ ସଞ୍ଚିତ ପ୍ରାରବ୍ଧ ।
ପୂର୍ବ ଇହଜନ୍ମାନ୍ତରେ ହୋଇଥାଏ ଲବ୍ଧ ॥
ପୁଣ୍ୟ ପାପ ଅନୁସାରେ ମିଳେ ସୁଖ ଦୁଃଖ ।
ଅବିଦ୍ୟା ବନ୍ଧନେ ପ୍ରାଣୀ ହୁଅନ୍ତି ନିରେଖ ॥

ସେହି କର୍ମଶୁଭାଶୁଭ ହୁଏ ନିବାରଣ ।
ଏକାନ୍ତ ଭକ୍ତିରେ ବ୍ରହ୍ମେ ପଶିଲେ ଶରଣ ॥
ଦେହ ଛାଡ଼ି ଅଭିମାନ ଦେଇବା ଦୁରନ୍ତରେ ।
ଆତ୍ମାର କରିବ ଐକ୍ୟ ପରମ ଆତ୍ମାରେ ॥
ସଚ୍ଚିଦାନନ୍ଦ ସ୍ୱରୂପ ବ୍ରହ୍ମର ଲକ୍ଷଣ ।
ସେହି ଲକ୍ଷଣେ ଆତ୍ମାକୁ କରିବ ତୁଳନ ॥
ଅପରୋକ୍ଷ ଜ୍ଞାନୀ ଚିଦାକାଶ ମାର୍ଗ ଧରି ।
ଜୀବନ୍ମୁକ୍ତ ହୋଇବେ ଭ୍ରମୁଥାନ୍ତି ବସୁନ୍ଧରୀ ॥
ବିଦେହ ଅବସ୍ଥା ଆସି ହୋଇଲେ ପ୍ରାପତ ।
ଧ୍ୟାଣଭ୍ରାନ୍ତିପଥେ କେବେ ନୁହେ ବିଜୃମ୍ଭିତ ॥
ନିର୍ବାଣ କୈବଲ୍ୟ ମୁକ୍ତିପଦେ ହୁଏ ସ୍ଥିର ।
ଅବୃତ୍ତିପଥରେ ଭ୍ରମ ନ ଘଟେ ତାହାର ॥
ଚିନ୍ମୟ ମହିମା ତତ୍ତ୍ୱେ ହୁଅଇ ବିଲୀନ ।
ଚିନ୍ମୟ ବ୍ରହ୍ମକୁ ଯେହୁ କରଇ ଭଜନ ॥
ଚିଦାକାଶ ଚିନ୍ମୟଙ୍କ ଚରଣ ସେବନ ।
ତତ୍ତ୍ୱ ବିବେକ ବିଜ୍ଞାନ ହୋଇଲା ବର୍ଣ୍ଣନ । ୫୦ ।

ଇତି ଶ୍ରୀମଚ୍ଚିନ୍ମୟ ବ୍ରହ୍ମଗୀତାୟାଂ ତତ୍ତ୍ୱବିବେକ ବିଜ୍ଞାନଯୋଗ
ବର୍ଣ୍ଣନେ, ସୃଷ୍ଟିତତ୍ତ୍ୱବ୍ୟାଖ୍ୟାନେ ପରମତତ୍ତ୍ୱ
ପଦନିରୂପଣେ ଏକ ତତ୍ତ୍ୱାଶ୍ରୟ ମୁକ୍ତି
କଥନୋ ନାମ ନବମୋଽଧ୍ୟାୟଃ ।

# ଦଶମୋଧ୍ୟାୟଃ ।

## ବିବେକବୈରାଗ୍ୟ ଓ ସାଧନ ମୁମୁକ୍ଷୁ ଯୋଗ :—

ପ୍ରତ୍ୟକ୍ଷ ଅନୁମାନାଦ୍ଦ ପ୍ରମାଣ ବାକ୍ୟରେ ।
ଶାସ୍ତ୍ରୀୟ ପୌରୁଷକାର ବିବେକ ବଳରେ ॥୧।
ସତ୍ସଙ୍ଗରେ ବ୍ରହ୍ମତତ୍ତ୍ୱ କରଣ ଅର୍ଜନ ।
ପରଂବ୍ରହ୍ମଜ୍ଞାନ ଭକ୍ତି କରିବ ସାଧନ ॥
ଯତି ଅବା ଗୃହୀ ଯେହୁ ଏକନିଷ୍ଠ ହୋଇ ।
ପରମାତ୍ମା ସତ୍ୟ ତତ୍ତ୍ୱପଦ ଥାନ୍ତି ଧ୍ୟାଇ ॥
ଭବସାଗର ମଧ୍ୟରୁ ହୁଅନ୍ତି ଉତ୍ତୀର୍ଣ୍ଣ ।
ପାପତାପକୃତ ଦୋଷ ହୋଇଯାଏ ଜୀର୍ଣ୍ଣ ॥
ବୋଧ ବ୍ରହ୍ମ ବସ୍ତୁ କଲେ ହୃଦରେ ଧାରଣ ।
ସଂସାର ବାଧାବାଧକ ହୁଏ ନିବାରଣ ॥
ସୃଷ୍ଟିର ପୂର୍ବରେ ଏକମାତ୍ର ପରଂବ୍ରହ୍ମ ।
ଅଦ୍ୱିତୀୟ ଭାବେ ରହିଥିଲେ ବିଦ୍ୟମାନ ॥
ତାହାଙ୍କ ମହିମା ବଳେ ହେଲା ବିଶ୍ୱ ଜାତ ।
ସତ୍ୟସ୍ୱରୂପରେ ବ୍ରହ୍ମ ଥାନ୍ତି ବିରାଜିତ ॥
ସେହି ବ୍ରହ୍ମଆତ୍ମା ଯେ ଅଟନ୍ତି ନିତ୍ୟବସ୍ତୁ ।
ଦୃଶ୍ୟ ପ୍ରପଞ୍ଚ ଜଗତ ଅନିତ୍ୟ ଅବସ୍ତୁ ॥
ଅଭିଭବଭୂମି ଏହୁ ସ୍ୱପ୍ନାଦସଦୃଶ ।
ଇନ୍ଦ୍ର ଜାଲ ତୁଲ୍ୟ ମିଥ୍ୟା ଅଟଇ ନୀରସ ॥
ସୁଖ ପ୍ରତ୍ୟାଶାରେ ମୁଢ଼ ହୋଇଣ ଅକୃଷ୍ଣ ।
ସଂସାର ଗହନ ମାର୍ଗେ ଲଭେ ବହୁ କଷ୍ଟ ॥୧୦।

ଭ୍ରାନ୍ତ କାଳରେ ସର୍ବଦା ହୋଇଣ ଅଚ୍ଛନ୍ନ ।
ସଂସାର କୂପରେ ସଦା ହୁଏ ତା ପତନ ॥
ଜନ୍ମ ପରେ ମୃତ୍ୟୁ ଲଭେ, ମୃତ୍ୟୁ ପରେ ଜନ୍ମ ।
ନଶ୍ୱର ମିଥ୍ୟା ବିଷୟେ ହୁଏ ଧାବମାନ ॥
ଅଜ୍ଞାନ ଲୌହଶୃଙ୍ଖଳେ ହୋଇଣ ବନ୍ଧନ ।
ଅବିବେକ ବିଷଯୁକ୍ତ କରଇ ଶନ୍ତନ ॥
ମନରେ ନାନା ସଂକଳ୍ପ ହୁଏ ପ୍ରାଦୁର୍ଭୂତ ।
ପରିଣାମେ ଭୋଗ କରେ ଦୁଃଖ ଅପ୍ରମିତ ॥
ବିପଦ ଆଳୟ ଗର୍ଭେ ନିପତିତ ହୋଇ ।
ଜଳ ଜ୍ଞାନେ ମୃଗତୃଷ୍ଣା ପଥରେ ଧାବଇ ॥
ବୃଥା ମୋହମୁଗ୍ଧ ହୋଇ ବୃଥା ସଂସାରରେ ।
ଅନ୍ଧ ପଶୁତୁଲ୍ୟ ଭ୍ରମୁ ଥାଏ ନିରନ୍ତରେ ॥
ଆତ୍ମାଜ୍ଞାନ ବିହୀନରେ ଅନ୍ଧ ଲୋକଗଣ ।
କାର୍ମ୍ୟ କର୍ମର ବିଧାନ କରନ୍ତି ପାଳନ ॥
ଅନିତ୍ୟ କାମ୍ୟ ଫଳକୁ ହୁଅନ୍ତି ପ୍ରାପତ ।
ସଂସାର ଦୁଃଖରେ ସଦା ହୁଅନ୍ତି ଜଡ଼ିତ ॥
ତୃଣାଦି ଠାରୁ ବ୍ରହ୍ମାଦି ବିଷ୍ଣୁ ଲୋକଯାଏ ।
ଦୁଃଖ ସୁଖ ମିଶ୍ରିତ ହୋଇଛି ସର୍ବ କାଯେ ॥
ବିନାଶ ପଥରେ ସର୍ବେ ହୁଅନ୍ତି ଧାବିତ ।
ଏଣୁ ଏ ସଂସାର କେବେଁ ନୁହଇ ନିଶ୍ଚିତ ॥୨୦॥
ବିବେକାନୁଭବେ ପରଂବ୍ରହ୍ମ ଅଟେ ନିତ୍ୟ ।
ତାହାଙ୍କ ବ୍ୟତୀତ ସର୍ବ ଅଟଇ ଅନିତ୍ୟ ॥
ପ୍ରଥମ ସାଧନ ନିତ୍ୟାନିତ୍ୟର ବିବେକ ।
ପରମାର୍ଥ ସତ୍ୟ ଅଟେ ବ୍ରହ୍ମ ସଚ୍ଚିଦେକ ॥

ଦୃଶ୍ୟ ସଂସାର ବିଷୟ ଅଟଇ କ୍ଷଣିକ ।
ଏଣୁ ଏ ନୁହଇ ସତ୍ୟ ପରମ ଅର୍ଥିକ ॥
ବୈରାଗ୍ୟ ଜାତ ହୋଇଲେ ଦୃଢ଼ ଜ୍ଞାନ ସାଧନ ।
ସଂସାର ବିଷୟାବନ୍ଧେ ନ ରହଇ ମନ ॥
ମୂଢ଼ ବ୍ୟକ୍ତିଗଣ ସଂସାରର ଐଶ୍ୱର୍ଯ୍ୟ ।
ଉତ୍କୃଷ୍ଟ ଭାବେ ବିଚାର କରନ୍ତି ଗୌରବ ॥
ସଂସାର ବିଷୟ ସବୁ ଅଟଇ ଅସ୍ଥିର ।
ଅନର୍ଥଦାୟିନୀ ମୋହ ହୋଇଛି ବିସ୍ତାର ॥
ବିଷୟଶ୍ରୀରୁ ଜାତ ଯେ ଚିନ୍ତାର ଅସଙ୍ଖ୍ୟ ।
ବହୁବିଧ ଦୁଃଖେ ଆତୁରେ କରାଏ ନିରକ୍ଷ ॥
ଜଡ଼ ଜ୍ଞାନୀ ଜନଗଣ ଉଲ୍ଲାସ ଚିତ୍ତରେ ।
ମହା ବିପଦ ବିଷୟ ତରଙ୍ଗ ଘାତରେ ॥
ବିନିକ୍ଷିପ୍ତ ହୋଇ ଭ୍ରମୁଥାନ୍ତି ମାୟାବନେ ।
ଇନ୍ଦ୍ରିୟାଗ୍ନିର ଚକ୍ରରେ କୁରଙ୍ଗୀ ସମାନେ ॥
ଐଶ୍ୱର୍ଯ୍ୟବିଷୟାଶ୍ରିତ ପୁରୁଷ ଯେ ଜନ ।
ସର୍ବଦା ତାହାର ଚିତ୍ତ ହୁଅଇ ମଳିନ ॥୩୦॥
ଗୁଣାଗୁଣ ବିଚାର ନ କର ହୃଦୟରେ ।
ଦୁରାଚାରଦ କ୍ରିୟାରେ ମତ୍ତେ ନିରନ୍ତରେ ॥
ଲୋଭ ହିଂସା ପ୍ରବୃତ୍ତି ହୁଅଇ ବର୍ଦ୍ଧିତ ।
ଦୟା ଦାକ୍ଷିଣ୍ୟାଦି ଗୁଣ ହୁଅଇ ବର୍ଜିତ ॥
ଅଧର୍ମ ମାର୍ଗରେ ବୁଦ୍ଧି ହୁଅଇ ଯୋଜିତ ।
କାମିନୀକାଞ୍ଚନ ସୁଖେ ରହଇ ମଜ୍ଜିତ ॥
ବିଷୟାବିଷକୁ ସଦା ଭାବଇ ଅମୃତ ।
ସେହି ମହାଦୋଷେ ଆତ୍ମା ହୁଅଇ ନିହତ ॥

ଭୟ ଭ୍ରାନ୍ତି ବିଷଦାଧ ବିକ୍ଷୋଭ ସଂଶୟ ।
ଖେଦାନ୍ୱିତ କରେ ସଦା ସଂସାରୀ ହୃଦୟ ॥
ଶରୀରେ ସଦ୍ ବୃତ୍ତି ସର୍ବ ହୁଅଇ ବିନଷ୍ଟ ।
ଜନ୍ମଜନ୍ମାନ୍ତରେ ଆତ୍ମା ହୁଏ ବହୁ କ୍ଳିଷ୍ଟ ॥
ରାଜଶ୍ରୀ ଲକ୍ଷ୍ମୀ ଅଟଇ ଅନର୍ଥଦାୟିନୀ ।
ପରମ ଶାନ୍ତିପଦର ଅଟେ ବିନାଶିନୀ ॥
ସର୍ପ ବିଷ ବୃଦ୍ଧି ହୁଏ ଯେପରି ଦୁଗ୍ଧପାନେ ।
ଅଧର୍ମିକ ବିଷୟୀ ଯେ ଅଟନ୍ତି ତେସନେ ॥
ଯେରୂପ ସୁମନୋହର ଅଟେ ଇନ୍ଦ୍ରଧନୁ ।
ନାନା ରଙ୍ଗରେ ରଞ୍ଜିତ ହୁଏ ତାର ତନୁ ॥
ଅନତିବିଳମ୍ବେ ସେହୁ ହୁଅଇ ବିଲୀନ ।
ନିମିଷକେ ବିଦ୍ୟୁତ ଉତ୍ପତ୍ତିବିନାଶନ ॥୪୦॥
ତଦ୍ରୂପ ବିଷୟଶ୍ରୀ ଯେ ଅଟଇ କ୍ଷଣିକ ।
ତାହାର ଆଶ୍ରୟେ ମଜ୍ଜିଥାନ୍ତି ମୂର୍ଖଲୋକ ॥
ଅଳ୍ପ ମାତ୍ର ସୁଖର ଯେ ନାହିଁ ସମ୍ଭାବନା ।
ଧର୍ମମାର୍ଗକୁ ସର୍ବଦା କରେ ବିଡ଼ମ୍ବନା ॥
ଜୀବର ଆୟୁଷ ଦେହ ଅଟେ ଯେ ଅସ୍ଥାୟୀ ।
ପଦ୍ମାଗ୍ରସ୍ଥିତ ଶିଶିର ପ୍ରାୟେକ ଅଟଇ ॥
ଅଜ୍ଞ ଜୀବଗଣ ସର୍ବେ ଉନ୍ମତ୍ତର ପ୍ରାୟେ ।
ବୃଥା କର୍ମେ ସ୍ୱ ଆୟୁଷ କରୁଥାନ୍ତି କ୍ଷୟେ ॥
ବିଷୟବିଷରେ ସଦା ହୋଇ ଜର୍ଜ୍ଜରିତ ।
ବିବେକ ଜ୍ଞାନରେ କ୍ଷଣେ ନୁହନ୍ତି ନିଷ୍ଠିତ ॥
ବୃଥା ଦେହଭାର ବହୁଥାନ୍ତି ନିରନ୍ତରେ ।
ଆସକ୍ତ ହୁଅନ୍ତି ସଦା କ୍ଷଣିକ ଭୋଗରେ ॥

ଶରୀର ଭୋଗାନନ୍ଦରେ ହୋଇଛନ୍ତି ବନ୍ଦ ।
ଦେହାନ୍ତେ ଲଭନ୍ତି ପ୍ରାଣୀ ନରକାଦି କଷ୍ଟ ॥
ଯେଉଁମାନେ ଜନ୍ମ ଲଭି ଏ ମର୍ତ୍ତ୍ୟଭୁବନେ ।
ଅପରିଚ୍ଛିନ୍ନ ବ୍ରହ୍ମଙ୍କୁ ଭଜନ୍ତି ଯତନେ ॥
ଲାଭାଲାଭେ ସୁଖଦୁଃଖେ ହୋଇ ସମଜ୍ଞାନୀ ।
ନିରନ୍ତରେ ସେବା କରୁଥାନ୍ତି ଆତ୍ମଜ୍ଞାନୀ ॥
ତାହାଙ୍କ ଜୀବନ ଅଟେ ଅଟେ ସୁଖପ୍ରଦ ।
ଜନ୍ମାନ୍ତେ ନ ଘଟେ ତାଙ୍କୁ ମାୟାର ବିପଦ ॥ ୫୦ ।
ଅହଂକାର ଉଦ୍ରେକରେ ଅଜ୍ଞାନ କାରଣେ ।
ମୋହାମୋହ ମୋହକାରେ ଭ୍ରମି ପ୍ରାଣିଗଣେ ॥
ଐଶ୍ୱର୍ଯ୍ୟ ଉପଭୋଗକୁ ନ କରନ୍ତି ଦୂର ।
ତ୍ରିତାପ ଅନଳେ ଦଗ୍ଧ ହୁଅନ୍ତି ନିରନ୍ତର ॥
ଦୋଷଦୁଷ୍ଟ ଚିତ୍ତ ବ୍ୟକ୍ତି ଦୁରାଶା ରଜ୍ଜୁରେ ।
ବନ୍ଧନ ହୋଇ ରହଇ ମାୟା କାରାଗାରେ ॥
ଉର୍ଦ୍ଧ୍ୱ ଅଧୋଭାବେ ଭ୍ରମ କରଇ ନିରତେ ।
ପରମ ସୁଖକୁ ପ୍ରାପ୍ତ ନୁହେ କଦାଚିତେ ॥
ଦୁଶ୍ଛେଦ୍ୟ ବିଷୟ ତୃଷ୍ଣା କାଳଭୁଜଙ୍ଗମ ।
ପ୍ରାଣିପ୍ରାଣେ ବହ୍ନିଜ୍ୱାଳା କରେ ଯେ ପ୍ରଦାନ ॥
ଚକ୍ଷୁଷ୍ମାନ ବ୍ୟକ୍ତିକୁ କରଇ ଅନ୍ଧୀଭୂତ ।
ବିସ୍ତୀର୍ଣ୍ଣ କାନନେ ନେଇ କରାଏ ନିହତ ॥
ବିଷୟ ତୃଷ୍ଣାକୁ ଯେହୁ କରେ ପରିତ୍ୟାଗ ।
ଆନନ୍ଦରେ ସେହୁ ଲଭେ ନିରାଶା ବିରାଗ ॥
କ୍ଷଣଭଙ୍ଗୁର ଅଟଇ ଏହୁ ଜୀବ ଦେହ ।
ବିବିଧ ବିକାର ଦ୍ରବ୍ୟେ ହୋଇଅଛି ବ୍ୟୂହ ॥

ମଳ ମୂତ୍ର ରେତ ରକ୍ତ ସ୍ୱେଦ ଶ୍ଳେଷ୍ମା ପିତ୍ତ ।
ଶିରା ପ୍ରଶିରା ମଧ୍ୟରେ ହୋଇଛନ୍ତି ପୂରିତ ॥
ନାନା ରୋଗ ଦୁଃଖ ଦେହେଁ ହୋଇଅଛି ପୂର୍ଣ୍ଣ ।
କାଳାନଳ ପ୍ରତାପରେ ହୁଏ ଜୀର୍ଣ୍ଣ ଶୀର୍ଣ୍ଣ ॥
ଦ୍ରବ୍ୟ ଅଦ୍ରବ୍ୟ ବିବିଧ ଜଡ଼ ଯେ ଚେତନ ।
ସମ୍ମିଶ୍ରଣରେ ଏ ଦେହ ହୋଇଛି ଗଠନ ॥
ଏହି ଚେତନ ସାହାଯ୍ୟେ ସିଦ୍ଧସାଧୁଜନ ।
ବ୍ରହ୍ମଜ୍ଞ ହୋଇ ମୁକ୍ତି ଲଭନ୍ତି ଯତନ ॥
ଅସାଧୁଗଣ ମଜ୍ଜିଣ ଅସଦ ଆଚାରେ ।
ପତନ ହୁଅନ୍ତି ଯାଇ ମହାନରକରେ ॥
ଆତ୍ମାର ଚିଦ୍ରୂପ ଯଦି ହୁଏ ପରିଜ୍ଞାତ ।
ଜଡ଼ଦେହକୁ ଭାବଇ ଲତାବୃକ୍ଷବତ ॥
ଏହି ବୃକ୍ଷେ ଦୁଇ ପକ୍ଷୀ କରିଛନ୍ତି ବାସ ।
ଜୀବ ପରମାତ୍ମା ନାମେ ହୋଇଣ ପ୍ରକାଶ ॥
ଦେହକୁ ଯେ ଆତ୍ମା ଭାବି କରଇ ଆଦର ।
ଭ୍ରାନ୍ତିବନ୍ଧନରେ ଜୀବ ରହେ ନିରନ୍ତର ।
ଆତ୍ମାକୁ ଯେ ଆତ୍ମାଭାବେ କରଇ ବିଚାର ।
ପରମ ଶାନ୍ତି ପଦରେ ବିଶ୍ରାମ ତାହାର ॥
ଦୃଶ୍ୟମାନ ଏହି ଦେହ ନିତାନ୍ତ ଅସତ୍ୟ ।
ଜଳଫେନ ବୁଦ୍‌ବୁଦବତ ପ୍ରାୟ ଯେ ଅନିତ୍ୟ ॥
ବୃଥା ସାଂସାରିକ କ୍ରିୟା ମୋହ ଆବର୍ତ୍ତିରେ ।
ଜୀବଗଣ ପ୍ରତାରିତ ହୁଅନ୍ତି ମିଥ୍ୟାରେ ॥
ଦେହରେ ବୈରାଗ୍ୟ ଭାବ କର ଉତ୍ପାଦନ ।
ବିଷୟଭୁକ୍ତିସ୍ପୃହାରେ ଆସ୍ଥା ନ କର ସ୍ଥାପନ ॥ ୭୦ ।

ଚତୁର୍ବିଧ ଦେହ ଅଟେ ନିତାନ୍ତ ଅସ୍ଥିର ।
ମନୁଷ୍ୟ ଜନ୍ମଗ୍ରହଣ ତଦ୍ରୂପ ନଶ୍ୱର ॥
ବାଲ୍ୟକାଳେ ଦୁଃଖ ଚିନ୍ତା ହୁଏ ଅପ୍ରମିତ ।
ଅଶକ୍ତ ଅକ୍ଷମା କ୍ଷୁଦ୍ର ଆପଦାଳିଯୁତ ॥
ମୂକତା ମୂଢ଼ବୁଦ୍ଧି ଯେ ଗୃଧ୍ନତା କୌତୁକ ।
ଦୈନ୍ୟ ଆଦ ଦୋଷେ ପ୍ରବର୍ତ୍ତେ ବାଳକ ॥
ଜୀବ ଏହିକାଳେ ରହି ଥାଏ ପରାଧୀନେ ।
ଚିନ୍ତାଜର୍ଜ୍ଜରିତ ପଶୁ ପକ୍ଷିଙ୍କ ସମାନ ॥
ନାନା ଦୁର୍ଦ୍ଦଶା ଲଭଇ ଶୈଶବର କାଳେ ।
ତୁଚ୍ଛ ଅଜ୍ଞାନତା କ୍ରୋଧ ହୁଏ ମାତୃକୋଳେ ॥
ବିବିଧ ଦୁଶ୍ଚେଷ୍ଟା ଦୁରାଶାର ଦୁର୍ବିଳାସେ ।
ମହାଭ୍ରମେ ପ୍ରଧାବିତ ହୁଏ ଅନାୟାସେ ॥
ସାର ଅସାରର ବୋଧ କରି ନ ପାରଇ ।
ଦୁର୍ଲୀଳାରେ ବାଲ୍ୟକାଳ କ୍ଷୟପ୍ରାପ୍ତ ଯାଇ ॥
ସର୍ବପ୍ରକାରର ଆଧିବ୍ୟାଧିଗଣ ଯେତେ ।
ପ୍ରପୀଡ଼ନ କରୁଥାନ୍ତି ଦେହ ମଧ୍ୟଗତେ ॥
ଗୁରୁଜନଙ୍କ ଦଣ୍ଡରେ ହୁଅଇ କାତର ।
ମନ ଗୃଧ୍ନଲ୍ୟ ଗତରେ ଭ୍ରମେ ନିରନ୍ତର ॥
ମିଥ୍ୟା ବସ୍ତୁକୁ ଭାବଇ ସତ୍ୟବସ୍ତୁ ପ୍ରାଏ ।
ବାଲ୍ୟ ସ୍ୱଭାବରୁ ବୁଦ୍ଧି ନ ରହଇ ଥୟେ ॥ ୮୦ ॥
ଏହିରୂପ ଦୋଷ ବହୁ ଅଛି ବିଦ୍ୟମାନ ।
ପ୍ରଶଂସ୍ୟ ନୁହଇ କେବେଁ ବାଲ୍ୟର ଜୀବନ ।
ଯୌବନକାଳ ଶରୀରେ ହୋଇଲେ ପ୍ରବେଶ ।
ନାନା ରଙ୍ଗରେ କେଶକୁ କରଇ ବିନ୍ୟାସ ।

ବିବିଧ ବିଳାସ ବ୍ୟସନରେ ହୁଏ ଯୁକ୍ତ ।
କାମକ୍ରୋଧ ଲୋଭ ମୋହ ଦ୍ୟୁତକ୍ରୀଡ଼ାରତ ॥
ଯେରୂପ ପେଚକଗଣ ଦିବସକାଳରେ ।
ବୃକ୍ଷ କୋଡ଼ ମଧ୍ୟେ ରହିଥାନ୍ତି ନିରନ୍ତରେ ॥
ରାତ୍ରିକାଳେ କୋଡ଼ ମଧ୍ୟୁ ହୋଇଣ ବାହାର ।
ଅହାର ବିହାର କରୁଥାନ୍ତି ନିଶାଚର ॥
ସେହିରୂପ ରିପୁଗଣ ବାଲ୍ୟ ଅବସ୍ଥାରେ ।
ଲୁକ୍କାୟିତଭାବେ ରହିଥାନ୍ତି ହୃଦୟରେ ॥
ଯୌବନକାଳରେ ସର୍ବେ ହୁଅନ୍ତି ପ୍ରବେଶ ।
ହିଂସା କୁଟିଳବୁଦ୍ଧି ଦୁଷ୍କର୍ମେ କରନ୍ତି ପ୍ରବେଶ ॥
ବୁଦ୍ଧି ହୁଏ ବିପର୍ଯ୍ୟୟ ଯୌବନର କାଳେ ।
ସଦାଗୁରୁ ନଷ୍ଟ ହୁଏ ଅଜ୍ଞାନର ବଳେ ॥
ଯୁବକଗଣ କାମରେ ହୁଅନ୍ତି ମୋହିତ ।
ଯୁବତୀ ସଙ୍ଗଭୋଗରେ ନିତ୍ୟେ ପ୍ରମୋଦିତ ॥
ପରିଶେଷେ ଅଙ୍ଗେ ଦୁଃଖ ହୁଏ ଅପ୍ରମିତ ।
ଯୌବନକାଳ ସର୍ବଦା ଅଟଇ ନିନ୍ଦିତ । ୧୦ ।
ଯୌବନେ ଅପୂର୍ବ କେବେଁ ନୁହଇ ନିଷ୍ଠିତ ।
ନିମିଷମାନକେ ହୁଏ କାଳକବଳିତ ॥
ଭୀଷଣ ଭ୍ରମ ପ୍ରମାଦେ ମତ୍ତି ଯୌବନରେ ॥
ମହାନରକକାଳରେ ପଡ଼ଇ ନିର୍ଭରେ ॥
ଯେହୁ ଏ ଯୌବନକାଳ କରେ ପରାଜୟ ।
ରିପୁଗଣଙ୍କୁ ସର୍ବଦା କରିଥାଏ ଥୟ ॥
ଇନ୍ଦ୍ରିୟର ବଶବର୍ତ୍ତୀ ନ ହୁଏ ଯେ ଜନ ।
ସେହୁ ମହାବୀର, ସେହୁ ଅଟେ ମହାଜନ ॥

ନାର୍ଦ୍ଧୋକ୍ଷେ ଯୌବନସିନ୍ଧୁ କଲେ ଅତିକ୍ରମ ।
ଅର୍ଦ୍ଧାଙ୍ଗନାର ସେବାତ ହୁଏ ତାର ଧର୍ମ ॥
ସ୍ତ୍ରୀମୂର୍ତ୍ତି ଯେ ନରକାଗ୍ନି କାଷ୍ଠର ସଦୃଶ ।
ତାହାର ସଂସର୍ଗେ ହୁଏ ପ୍ରାଣର ବିନାଶ ॥
ରମଣୀର ଦେହ ଯେହୁ ଅଟେ ଶୋଭାବନ ।
ତ୍ୱକ ମାଂସ ରକ୍ତ ବାଷ୍ପ ଜଳାଦି ମିଳନ ॥
ଏ ସବ ପଦାର୍ଥେ ଯଦି ହୁଅଇ ବିବେକ ।
ପ୍ରମଦା ତନୁ ଦିଶଇ ନିତାନ୍ତ ଘୃଣ୍ୟକ ॥
ନାନା ବସ୍ତ୍ର ଅଳଙ୍କାର ଶରୀରେ ମଣ୍ଡନ ।
ସୁଗନ୍ଧ ଦ୍ରବ୍ୟ ଅଙ୍ଗରେ କରନ୍ତି ଲେପନ ॥
ପୁରୁଷର ବିପୁଳ ଉଲ୍ଲାସ ଉନ୍ମାଦନୀ ।
ରମଣୀ ଅଟଇ କାମ ସନ୍ତାପଜନନୀ । ୧୦୦ ।
କେଶକଳ୍ପଧାରିଣୀ ଯେ ଲାବଣ୍ୟବତୀ ।
ଲୋଚନପ୍ରିୟା ରମଣୀ ନରକର ଗଡ ॥
ଦେ ମୁକ୍ତାମାଳାଧାରୀ ମନଉନ୍ମାଦନୀ ।
ଉତ୍ତୁଙ୍ଗସ୍ତନଧାରିଣୀ ଜ୍ଞାନବିନାଶିନୀ ॥
ଅନ୍ତରରେ ରକ୍ତମାଂସମଳମୂତ୍ରପୂର୍ଣ୍ଣ ।
ବାହ୍ୟର କୌଟିଲ୍ୟ ମନ କରଇ ବିଦୀର୍ଣ୍ଣ ॥
ଦୁଷ୍ପର୍ଶା ଅଟେ କାମିନୀ ଅଗ୍ନିଶିଖା ସମ ।
ଦୂରରୁ ସେ ଦାହ କରେ ଜୀବର ମରମ ॥
ପୁରୁଷ ଚିତ୍ତକୁ ନାରୀ କରେ ଆକର୍ଷଣ ।
ଜୀବଜୀବନୀ ଶକ୍ତିକୁ କରେ ବିଦାରଣ ॥
ନରକଦ୍ୱାରରେ ନେଇ କରାଏ ସଂଯୋଗ ।
ଅଦୂରଦର୍ଶୀର ଜ୍ଞାନ କରଦଏ ଭଙ୍ଗ ॥

ଏହିରୂପ ନାନା ଦୋଷ ଅଛି ନାରୀଠାରେ ।
ସ୍ତ୍ରୀସ୍ପର୍ଶ ନ କରିବ ସୁଜ୍ଞାନବଳରେ ॥
କାମିନୀସମ୍ଭୋଗ ଯେହୁ କରେ ପରିତ୍ୟାଗ ।
ଜଗତର ସର୍ବତ୍ୟାଗୀ ସେହୁ ମହାଭାଗ ॥
ସ୍ତ୍ରୀସଙ୍ଗରେ କେବେଁ ଯେହୁ ନୁହେ ଅନୁରକ୍ତ ।
ବ୍ରହ୍ମାନନ୍ଦ ପଦେ ସଦା ହୁଅଇ ଆସକ୍ତ ॥
ବିଷୟବୈରାଗ୍ୟ ଯାହା ହୁଏ ସେହୁ ସ୍ଥିର ।
ବ୍ରହ୍ମନିର୍ବାଣ ପଦରେ ଲଭେ ଅଧିକାର ॥
ଭୀତକ ଦେହରେ ଜରା ହୋଇଲେ ପ୍ରବେଶ ।
ବଳ ଜ୍ଞାନ ବୁଦ୍ଧି ସର୍ବ ହୋଇଯାଏ ଧ୍ୱଂସ ॥
କର୍କଶ ବିକୃତ ହୁଅଇ ଅଙ୍ଗ ଯେ ପ୍ରତ୍ୟଙ୍ଗ ।
କ୍ଲେଶପ୍ରଦାୟିନୀ ଜରା କରେ ରୂପ ଭଙ୍ଗ ॥
ସର୍ବ ବିଷୟରେ ବୃଦ୍ଧି ହୁଏ ଅଭିଳାଷ ।
ଉପଭୋଗ ବିଷୟରେ ନ ପାଏ ସାହସ ॥
ସାମର୍ଥ୍ୟବିହୀନ ବୃଦ୍ଧଗଣ ଦେହାଦିରେ ।
ନାନା ରୋଗେ ଦଗ୍ଧ ହେଉଥାନ୍ତି ନିରନ୍ତରେ ॥
ସ୍ୱ ସ୍ତ୍ରୀ, ପୁତ୍ର ସୁହୃଦ ବାନ୍ଧବ ଦାସୀ ଦାସ ।
ବୃଦ୍ଧ ବାକ୍ୟ ଶ୍ରବଣରେ ନୁହନ୍ତି ଉଲ୍ଲାସ ॥
ଦୈନ୍ୟଦୋଷମୟୀ ଅନ୍ତର୍ଦାହପ୍ରଦାୟିନୀ ।
ସୁଦୀର୍ଘ ବିଷୟାବିଷ ମାୟାର ନନ୍ଦନୀ ॥
ବୃଦ୍ଧ ଅନ୍ତରରେ ସଦା ବର୍ଦ୍ଧିତ ହୁଅଇ ।
ଦୁରାଶା ଭଣ୍ଡକୁ ବୃଦ୍ଧ କେବେଁ ନ ତେଜଇ ॥
ଆସକ୍ତି ଅର୍ଜ୍ଜି ଅପଦ ଏହି ନାୟାଙ୍ଗନା ।
ବୃଦ୍ଧ ହୃଦୟକୁ କରୁଥାନ୍ତି ବିଡ଼ମ୍ବନା ॥

ଅନେକାନେକ ଦୋଷ ଯେ ଏହିରୂପେ ଖ୍ୟାତ ।
ବୃଦ୍ଧ ଅବସ୍ଥା ଯେ ଆସି ହୁଏ ଉପଗତ ॥
କ୍ଷଣକେ ମୃତ୍ୟୁରାଜ ଆସି କରେ ଆକର୍ଷଣ ।
ନିମିଷମାତ୍ରକେ ବୃଦ୍ଧ ଲଭଇ ମରଣ । ୧୨୦ ।
କେହି ବା ବାଲ୍ୟ ଯୌବନ ଅବସ୍ଥା ମଧ୍ୟରେ ।
କାଳଗ୍ରାସରେ ପଡ଼ନ୍ତି ହୁଅନ୍ତି ସତ୍ୱରେ ॥
ଏହିରୂପ ସର୍ବାବସ୍ଥା ବିଷୟର ଦୋଷ ।
ସୁବିବେକୀ ଜନ ତାହା କରନ୍ତି ବିଶ୍ୱାସ ॥
ଇହଲୋକଭୋଗ୍ୟ ମାଲ୍ୟଚନ୍ଦନବନିତା ।
ସୁକୋମଳ ଶଯ୍ୟା ବସ୍ତ୍ର ଧନ ଅପ୍ରମିତା ॥
ରାଜଐଶ୍ୱର୍ଯ୍ୟ ପ୍ରଭୃତି ତାମ୍ବୂଳ ଭୂଷଣ ।
ଗଜ ଅଶ୍ୱ ଯାନବାହାନାଦି ଆରୋହଣ ।
ସ୍ୱର୍ଣ୍ଣ ରୌପ୍ୟ ତାମ୍ର ରତ୍ନ କ୍ଷେତ୍ର ଧନ ଆଦି ।
ସୁଗନ୍ଧ ସୁମନୋହର ତୈଳ ଯେ ପୁଷ୍ପାଦି ॥
ନାନାରଙ୍ଗ ନୃତ୍ୟ ସଙ୍ଗୀତାଦି ବିଭୂଷଣ ।
ଯେଉଁ ଗୀତବାଦ୍ୟ ହୁଏ ତାମସ ଲକ୍ଷଣ ॥
ଦାର ଅପତ୍ୟାଦି ଗୃହ ଯେ ପାଣ୍ଡିତ୍ୟ ବୃତ୍ତି ।
ଏ ସର୍ବ ବିଷୟେ ଶତ୍ରୁ ନୋହିଲେ ପ୍ରବୃତ୍ତି ॥
ଇହଲୋକ ଭୋଗ ଇଚ୍ଛା ହୁଅଇ ରହିତ ।
ପରଲୋକ ସ୍ୱର୍ଗଭୋଗ ନ କରେ ବାଞ୍ଛିତ ॥
ବିବେକ ବୈରାଗ୍ୟ ପଦ ହୁଅଇ ସମ୍ପନ୍ନ ।
ସର୍ବଜ ଦୃଶ୍ୟ ବସ୍ତୁରେ ହୁଏ ଉଦାସୀନ ॥
ଅହଂକାରାଦି ବୃତ୍ତିକୁ ତେଜନ୍ତି ହୃଦରୁ ।
ବାହ୍ୟ ଅଭ୍ୟନ୍ତର ତ୍ୟାଗୀ ସେହି ସଂସାରରୁ ॥

ଅଭିମାନ ଭଙ୍ଗ ଯେହୁ ହୁଏ ବାହ୍ୟତ୍ୟାଗୀ ।
ଜନ୍ମ ଜନ୍ମାନ୍ତରେ ସେ ନୁହଇ ମୋକ୍ଷଭାଗୀ ॥
ମନମଧ୍ୟେ ଭାବେ ଭିନ୍ନ, ବଚନରେ ଭିନ୍ନ ।
କ୍ରିୟାକଳାପରେ କାର୍ଯ୍ୟ କରୁଥାଏ ଭିନ୍ନ ॥
ସେହୁ ଆତ୍ମା ଅପହାରୀ ଚୋର ଯେ ଦୁର୍ମ୍ମତି ।
ସଂସାର ମଧ୍ୟରୁ ଲଭି ନ ପାରେ ସଦ୍‌ଗତି ॥
ମନ ବାକ୍ୟ କର୍ମ ଯାର ଏକ ସୁନିର୍ମ୍ମଳ ।
ବିବେକ ବୈରାଗ୍ୟପଥେ ଗମଇ ସରଳ ॥
ସେହୁ ତ୍ୟାଗୀ ବ୍ରହ୍ମାମୃତ ପଦ ହୁଏ ପ୍ରାପ୍ତ ।
ମୋହମାୟା ସଂସାରରେ ନୁହଇ ବିକ୍ଷିପ୍ତ ॥

ସାଧନ ମୁମୁକ୍ଷୁ ଯୋଗ —

ଇହ ଅମୁତ୍ର ଭୋଗର ବୈରାଗ୍ୟ ଲକ୍ଷଣ ।
ଦ୍ୱିତୀୟ ସାଧନେ ଯେହୁ ହୋଇଛି ନିପୁଣ ॥
ତୃତୀୟ ଷଡ଼ ସମ୍ପତ୍ତି ସମାଦି ସାଧନ ।
ଭକ୍ତ ବୈରାଗ୍ୟ ଯୋଗରେ କରିବ ଅର୍ଜ୍ଜନ ॥
ସମ ଦମ ଉପରତି ତିତିକ୍ଷା ଯେ ଶ୍ରଦ୍ଧା ।
ସମାଧାନସହ ଏହୁ ଅଟନ୍ତି ଷଡ଼ବିଧା ॥
ସମ ଅଟଇ ଅନ୍ତର ଇନ୍ଦ୍ରିୟ ନିଗ୍ରହ ।
ପ୍ରପଞ୍ଚାଦି ବିଷୟରେ ନ ରହେ ଆଗ୍ରହ ॥
ଦମ ବାହ୍ୟ ଇନ୍ଦ୍ରିୟର ଅଟେ ଯେ ନିବୃତ୍ତି ।
ବିଷୟ ଦୋଷରେ କେବେ ନ ଘଟେ ପ୍ରବୃତ୍ତି ॥
ସ୍ୱଧର୍ମ ନିଷ୍ଠାର ନାମ ହୁଏ ଉପରତି ।
ସଂସାର ବାସନା ସର୍ବ ହୁଅଇ ନିବୃତ୍ତି ॥

ଶୀତ ଉଷ୍ଣ ସୁଖ ଦୁଃଖ କରିଲେ ସହନ୍ୟ ।
କ୍ଷମା ତିତିକ୍ଷା ପଦ ଯେ ହୁଅଇ ନିଧାର୍ଯ୍ୟ ॥
ଶ୍ରଦ୍ଧା ନାମ ଗୁରୁ ବାକ୍ୟେ ଅଟଳ ବିଶ୍ୱାସ ।
ବେଦାନ୍ତ ବିଦ୍ୟାରେ ମଜ୍ଜି ଥାଏ ଅହର୍ନିଶ ॥
ଚିତ୍ତ ଏକାଗ୍ରତା ନାମ ଅଟେ ସମାଧାନ ।
ଏକ ଚିଦନନ୍ଦ ବ୍ରହ୍ମଙ୍କୁ କରଇ ଚିନ୍ତନ ॥
ଏହି ଷଟ୍ ସମ୍ପତ୍ତିକୁ କରିଲେ ସାଧନ ।
ଜ୍ଞାନୈଶ୍ୱର୍ଯ୍ୟ କଳା ସର୍ବ ହୁଅଇ ବର୍ଦ୍ଧନ ॥
କ୍ଷିପ୍ର ଲଭିବ ମୁକ୍ତି ମାୟା ବନ୍ଧନରୁ ।
କେଉଁ ଉପାୟେ ତରିବ ଦୁସ୍ତର ସଂସାରୁ ॥
ସୁଦୃଢ଼ ବୁଦ୍ଧିରେ ଏହା ହେଲେ ଉଦ୍ଦୀପିତ ।
ଚତୁର୍ଥ ମୁମୁକ୍ଷୁ ଯୋଗ ହୁଅଇ ସାଧିତ ॥
ମୋକ୍ଷାଙ୍ଗ ସାଧନ ଚତୁଷ୍ଟୟ ହେଲେ ପୂର୍ଣ୍ଣ ।
ମାୟା ଆବରଣେ ଜୀବ ନୁହେ ସମାକୀର୍ଣ୍ଣ ॥
ତତ୍ତ୍ୱ ବିବେକ ପଦରେ ଲଭେ ଅଧିକାର ।
ପରଂବ୍ରହ୍ମେ ଆତ୍ମା ଐକ୍ୟ କରେ ନିରନ୍ତର ॥
ସମସନ୍ତୋଷ ବିଶ୍ୱର ସାଧୁସଙ୍ଗ ବଳେ ।
ମୋକ୍ଷଦ୍ୱାର ଉଦ୍ଘାଟନ ହୁଅଇ ସରଳେ ॥
ମୁମୁକ୍ଷୁ ପୁରୁଷଙ୍କର ଏହି ବ୍ୟବହାର ।
ଜ୍ଞାନସାଧନରେ ରହିଥାନ୍ତି ଯେ ତତ୍ପର ॥
ସର୍ବଭୂତେ ସମଦର୍ଶୀ ନିରଅଭିମାନୀ ।
କୋମଳ ଚିତ୍ତ ସୌହାର୍ଦ୍ଦ ପରତତ୍ତ୍ୱଜ୍ଞାନୀ ॥
ମାନସିକ ସୁଖତୃଷ୍ଣା କରି ଦୂରୀଭୂତ ।
ପ୍ରଶାନ୍ତ ସମ ଗୁଣରେ ହୁନ୍ତି ବିଭୂଷିତ ॥

ପରକୌଟିଲ୍ୟାଦି ବୃତ୍ତି ନାଶିଣ ଅନ୍ତରେ ।
ପ୍ରତାରିତ ନ ହୁଅନ୍ତି ବିଷୟ ଭୋଗରେ ॥
ହର୍ଷ ଶୋକ ଗୁଣ ଦୋଷେ ନ ହୁଅନ୍ତି ଲିପ୍ତ ।
ଉତ୍ସବେ ମରଣେ ବୁଦ୍ଧି ନ ହୁଏ ପ୍ରକ୍ଷିପ୍ତ ॥
ସୁବିବେକେ ଅତ୍ମାନାତ୍ମା କରନ୍ତି ବିଗ୍ଭର ।
ସଂସାର ବାସନା ସର୍ବ କରି ପରିହାର ॥
ରୋଗାଦି ଦୁଃଖ ଶୋକରେ ନୁହନ୍ତି ଉଦ୍‌ବିଗ୍ନ ।
ପରମ ସନ୍ତୋଷ ସୁଖେ ହୋଇଥାନ୍ତି ମଗ୍ନ ॥
ପାର୍ଥିବ ସାମ୍ରାଜ୍ୟ ସୁଖ କରିଥାନ୍ତି ହେୟ ।
ଅମୃତ ଶାନ୍ତି ପଦରେ ହୋଇଥାନ୍ତି ଥୟ ॥
ବ୍ରହ୍ମଜ୍ଞାନ ତତ୍ତ୍ୱନିଷ୍ଠ ସୁସାଧୁ ସଙ୍ଗରେ ।
ଅବିଦ୍ୟାଭ୍ରାନ୍ତି ବିନାଶ ହୁଅଇ ସତ୍ୱରେ ॥
ସାଧୁ ସମାଗମେ ହୁଏ ସୁବୁଦ୍ଧି ପ୍ରକାଶ ।
ମନ ଦୁର୍ବାସନା ସର୍ବ ହୁଅଇ ବିନାଶ ॥
ପରମ ସୁଶାନ୍ତି ପଦ ଅତ୍ମା ତତ୍ତ୍ୱଜ୍ଞାନ ।
ବିଶୁଦ୍ଧ ଭକ୍ତି ବୈରାଗ୍ୟ ଅଜ୍ଞାନନାଶନ ॥
ଏ ସର୍ବ ଲଭ ହୁଅଇ ସୁସାଧୁ ସଙ୍ଗତେ ।
ବ୍ରହ୍ମନିଷ୍ଠ ସିଦ୍ଧ ସାଧୁ ଗୁରୁ ଏ ଜଗତେ ॥
ତୀର୍ଥ ବ୍ରତ ଦାନ ଯଜ୍ଞ ବେଦ ଅଧ୍ୟୟନେ ।
କୂପ ତଡ଼ାଗ ପ୍ରସାଦ ପୁଣ୍ୟକର୍ମ ମାନେ ॥
ବହୁ କଳ୍ପାନ୍ତ ସାଧନେ ବହୁ ଆୟାସରେ ।
ବ୍ରହ୍ମଆତ୍ମା ଜ୍ଞାନପ୍ରାପ୍ତ ନୁହେ ସହଜରେ ॥
କ୍ଷଣକାଳ ସାଧୁସଙ୍ଗେ ଜ୍ଞାନମାର୍ଜ୍ଜନରେ ।
ଅହେତୁକ ଜ୍ଞାନଭକ୍ତି ଜନ୍ମେ ହୃଦୟରେ ॥

ସେହି ନିଷ୍କାମ ଭକତ ଯୋଗମାର୍ଗ ମଧ୍ୟରେ ।
ମୁମୁକ୍ଷୁ ପୁରୁଷ ମାୟା ମୋହରୁ ତରନ୍ତିରେ ॥
ସାଧୁସେବା କର କରୁଥିଲେ ସାଧୁଗୋଷ୍ଠି ।
ମାୟା ସଂସାରର ସବୁ ନାଶଇ ଅରିଷ୍ଟି ॥
ବିବେକ ବୈରାଗ୍ୟ ଯୋଗ ମୁମୁକ୍ଷୁ ସାଧନ ।
ଏହି ଚତୁର୍ବିଧ ନ୍ୟାୟ ହୋଇଲା ବର୍ଣ୍ଣନ ॥ ୧୬ ।

ଇତି ଶ୍ରୀମଚ୍ଚିଦାନନ୍ଦବ୍ରହ୍ମଗୀତା ବିବେକବୈରାଗ୍ୟସାଧନମୁମୁକ୍ଷୁ-
ଯୋଗବର୍ଣ୍ଣନେ, ନିତ୍ୟାନିତ୍ୟ ବସ୍ତୁବିଚାରଣେ,
ବିଷୟ ବୈରାଗ୍ୟୋତ୍ପାଦନେ, ସାଧନମୁମୁକ୍ଷୁ-
ପୁରୁଷ କର୍ତ୍ତବ୍ୟ ନିରୂପଣେ
ନାମ ଦଶମୋଽଧ୍ୟାୟଃ ।

---

## ଏକାଦଶୋଽଧ୍ୟାୟଃ

## ତ୍ୟାଗ ସନ୍ନ୍ୟାସ ଯୋଗ

ପୂର୍ବ ସୁକୃତର ବଳେ ସୁସାଧୁ ସଙ୍ଗତେ ।
ବୈରାଗ୍ୟ ବାସନା ଦୃଢ଼ ହୋଇଲେ ହୃଦତେ । ୧ ।
କାୟମନୋବାକ୍ୟେ ହେବ ସଂସାରରୁ ତ୍ୟାଗୀ ।
ରୁଣନସ୍ତ୍ର ଦୋଷେ କେବେଁ ନ ହୋଇବ ଭ୍ରାଗୀ ।
ବାଲ୍ୟ ଯୌବନାଦ୍ୟ ଅବସ୍ଥାର ନାହିଁ ଭେଦ ।
ବିଷୟ ତ୍ୟାଗରେ ଲଭ ହୁଏ ଶ୍ରେୟ ପଦ ॥
ପିତା ମାତା ଭ୍ରାତା ବନ୍ଧୁ ଆତ୍ମୀୟଗଣଙ୍କୁ ।
ମୃଦୁବାକ୍ୟରେ ପ୍ରବୋଧ କରିବ ତାହାଙ୍କୁ ॥

ସିଦ୍ଧଗୁରୁଜନଙ୍କ ସମୀପେ ଉପସ୍ଥ ହୋଇ ।
ସ୍ୱବୈରାଗ୍ୟଭାବ ଗୁରୁ ସମ୍ମୁଖେ ଜଣାଇ ॥
ତାହାଙ୍କ ଆଦେଶେ ପିତା ମାତାଙ୍କ ହସ୍ତରେ ।
ଧର୍ମ୍ମପଥେ ଭିକ୍ଷା ନେବ ସୁହୃଦ ଗୃହରେ ॥
ସ୍ୱଗୃହ ଗ୍ରାମ ଦେଶକୁ ତେଜିବ ବହନ ।
ଗୁରୁଜନ ପଶ୍ଚାତରେ କରିବ ଗମନ ॥
ଗୁରୁ ପୀଠସ୍ଥଳେ ଅବା ଦେଶ ପର୍ଯ୍ୟଟନେ ।
ଗୁରୁଜନ ସେବା କରୁଥିବ ପ୍ରତିଦିନେ ॥
ମାଳା ଉପବୀତ ବସ୍ତ୍ର ଭୂଷଣାଦି ଯେତେ ।
ପରିବ୍ରାଜ ତାହା ତ୍ୟାଗ କରିବ ତୁରିତେ ॥
ଶିଖାସହ ମସ୍ତକରୁ ହୋଇବ ମୁଣ୍ଡନ ।
ଅଙ୍ଗ ପ୍ରତ୍ୟଙ୍ଗ ଶରୀର କରିବ ଶୋଧନ ॥
ଗୁରୁଙ୍କ ଆଦେଶେ ଡୋର କୌପିନ ଗ୍ରହଣ ।
ପରମ ସନ୍ନ୍ୟାସୀ ହୋଇ କରିବ ଧାରଣ ॥
ଜ୍ଞାନଭକ୍ତିଯୋଗ ଦୃଢ଼େ କରିବ ସାଧନ ।
ଚିତ୍ତସଂଯମରେ ରହିଥିବ ସାବଧାନ ॥
ବ୍ରହ୍ମ ଶରଣରେ ନ ହୋଇବ ବିଚଳିତ ।
ସନ୍ନ୍ୟାସ ଯୋଗରେ ନିତ୍ୟ ଥିବ ଦୃଢ଼ୀଭୂତ ॥
ସତ୍ୟ ଧର୍ମଶାସ୍ତ୍ର କରୁଥିବ ଅଧ୍ୟୟନ ।
ସତ୍ୟନୀତି ସଯତ୍ନରେ କରିବ ପାଳନ ॥
ସିଦ୍ଧଜନ ଗୁରୁବାକ୍ୟେ ରଖିବ ବିଶ୍ୱାସ ।
ବୈରାଗ୍ୟ ମୁମୁକ୍ଷୁ ଯୋଗ କରିବ ଅଭ୍ୟାସ ॥
ତୀବ୍ର ବୈରାଗ୍ୟର ନିଷ୍ଠା ସୁଶାନ୍ତିର ଭାବ ।
ତ୍ୟାଗୀର ସାଧୁ ଲକ୍ଷଣ ଶିଖେ ଗୁରୁଦେବ ॥

ତତ୍ତ୍ୱ ମହାବାକ୍ୟ ସବ ଦେବେ ଉପଦେଶ ।
ବେଦାନ୍ତେ ବର୍ଣ୍ଣିତ ହୋଇଅଛି ଯେ ବିଶେଷ ॥
ତପୃରେ ବୃକ୍ଷ ବଳ୍କଲ ବାନା କଉପୀନ ।
ଗଇଣ ନିମିତ୍ତ ଯତ୍ନ ହୁଅନ୍ତୁ ସୁଜନ ॥
ବ୍ରହ୍ମନିଷ୍ଠ ଅବଧୂତ ସିଦ୍ଧ ଗୁରୁଜନ ।
ପରମ ସନ୍ନ୍ୟାସ ଦୀକ୍ଷା କରନ୍ତି ପ୍ରଦାନ ॥
ତ୍ୟାଗନିଷ୍ଠ ବୈରାଗ୍ୟର ଭକ୍ତି ପ୍ରବଳରେ ।
ମହାମାମଣ୍ଡଳ ସିଦ୍ଧବୃନ୍ଦ ସୁବାଗ୍ନରେ ॥
ବଲ୍କଲବେଶ ବାନା ଯେ ଗୁରୁଙ୍କ ଆଜ୍ଞାରେ ।
ପ୍ରଦାନ କରିବେ ଗୁରୁ ସୁଶାନ୍ତ ଚିତ୍ତରେ ॥
ଅପର ସନ୍ନ୍ୟାସ ବେଶ ଦେଖି ତ୍ୟାଗବୀର ।
ବଲ୍କଲର କଟୀସୂତ୍ର କୌପୀନ ଅବର ॥
ପରଂବ୍ରହ୍ମଙ୍କୁ ଚିତ୍ତରେ କରଣ ସ୍ମରଣ ।
ଗୁରୁଜନଙ୍କ ହସ୍ତରୁ କରିବ ଗ୍ରହଣ ॥
ପ୍ରାତଃ ବ୍ରାହ୍ମ ମୂହୂର୍ତ୍ତରେ ସମର୍ପି ପ୍ରଭୁଙ୍କୁ ।
ବଲ୍କଲ କୌପୀନ ପିନ୍ଧ ସ୍ମରି ବ୍ରହ୍ମଙ୍କୁ ॥
ତଦନ୍ତେ ପରଂବ୍ରହ୍ମଙ୍କୁ କରିବ ଦର୍ଶନ ।
ବିଶୁଦ୍ଧ ଅଦ୍ୱୈତ ତତ୍ତ୍ୱ କରଣ ଚିନ୍ତନ ॥
ତପୃରେ ଯେ ସିଦ୍ଧ ଅବଧୂତ ଗୁରୁଜନ ।
ଶିଷ୍ୟଙ୍କୁ ବାବା ଶବ୍ଦରେ କରଣ ଆହ୍ୱାନ ॥
ଶରଣ ମାନ୍ୟ କରନ୍ତି ଅସ୍ମହରିବ ବନ୍ଧୁ ।
ଗୁରୁ ଶିଷ୍ୟଙ୍କର ଭେଦ ନାଶ ଯାଏ ତହିଁ ॥
ବ୍ରହ୍ମଅବଧୂତ ପରସନ୍ନ୍ୟାସ ଦୀକ୍ଷାରେ ।
ଗୁରୁ ଶିଷ୍ୟ ଭେଦ ତ୍ୟାଗ ହୁଏ ବିଜ୍ଞାନରେ ॥

ଶରଣ ଉପବେଶନ ଭକ୍ଷାଦ୍ୟ ଗ୍ରହଣ ।
ଏ ସର୍ବ କ୍ରିୟାର ଭେଦ ହୁଏ ନିବାରଣ ॥
ପରବ୍ରହ୍ମର ପରବ୍ରହ୍ମରେ ବହୁ ଅନୁଭବ ।
ଏକାନ୍ତ ଶରଣ ଭକ୍ତି କରନ୍ତି ଯେ ସର୍ବ ॥
ସନ୍ତଙ୍କ ଗୋଷ୍ଠିରେ ସର୍ବ ହୋଇ ପ୍ରମୋଦିତ ।
ଅବଧୂତ ଯତିଭାବେ ହୁଅନ୍ତି ବିଖ୍ୟାତ ॥
ଅତି ମାନ ଶରୀରେ ଯେହୁ ଅଧିକୃତ ।
ତତ୍ତ୍ୱମସ୍ୟାଦି ବାକ୍ୟରେ ହୁଅନ୍ତି ଚିନ୍ତିତ ॥
ନିର୍ବିକଳ୍ପ ଭାବେ ବ୍ରହ୍ମନିଷ୍ଠ ପରାୟଣ ।
ଅଦ୍ୱୈତ ଭାବେ ବ୍ରହ୍ମରେ ପଶନ୍ତି ଶରଣ ॥
ସ୍ଥିତପ୍ରଜ୍ଞ ସମାଧିରେ ହୁଅନ୍ତି ନିଶ୍ଚିନ୍ତ ।
ପରସନ୍ନ୍ୟାସ ନାମରେ ହୁଅନ୍ତି କଥିତ ॥
ସଗୁଣସୃଷ୍ଟିରୁ ତୃପ୍ତ ହୋଇଥାଏ ଯହୁଁ ।
ନିର୍ଗୁଣ ବ୍ରହ୍ମରେ ରତି କରନ୍ତି ବଳୟ ॥
ଅକାମ ଅକ୍ରୋଧ ଜିତେନ୍ଦ୍ରିୟ ଅକିଞ୍ଚନ ।
ଅପ୍ରମତ୍ତ ନିର୍ଲୋଭ ଯେ ଶୋକାଦିବିହୀନ ॥
ଭୟ ମୋହ ଶୂନ୍ୟ ଶୁଚି ବାହ୍ୟ ଅଭ୍ୟନ୍ତରେ ।
ପରମିତ ଭୋଜୀ ମୃଦୁ ବାକ୍ୟବ୍ୟବହାରେ ॥
ଅମାତ୍ସର୍ଯ୍ୟ ଦୟା କ୍ଷମା ଶାନ୍ତ ସୁଶୀଳତା ।
ସର୍ବାରମ୍ଭ ପରିତ୍ୟାଗ ନିରଭିମାନତା ॥
ମୈତ୍ର୍ୟାଦିଭାବସମ୍ପଦ ଅକୁଟିଳ ବୁଦ୍ଧି ।
ବ୍ରହ୍ମପଦ୍ମୀ ବୃତ୍ତିରେ ମଜ୍ଜନ୍ତି ନିରବଧି ॥
ସର୍ବଜନ ଉପକାରୀ ନିରପକ୍ଷବାଦୀ ।
ସମାଦି ଗୁଣକୁ ସଦା ରକ୍ଷନ୍ତି ସମ୍ପାଦି ॥

ସୃଷ୍ଟିର ସତ୍ୟଭ୍ରାନ୍ତି କରନ୍ତି ନିରତ ।
ବିଷୟିଜନ ସଙ୍ଗରୁ ହୁଅନ୍ତି ରହିତ ॥
ଦୁର୍ଗ୍ରାହ୍ୟ ବାସନା ସର୍ବ କରନ୍ତି ବର୍ଜନ ।
ସଂସାର ପାଶରେ ଚିତ୍ତ ନୁହଇ ବନ୍ଧନ ॥
ଧୂଳିଧୂସରିତ ଅଙ୍ଗ ସୁନିର୍ମ୍ମଳ ଚିତ୍ତ ।
ତତ୍ତ୍ୱ ବ୍ରହ୍ମପଦେ ଚିନ୍ତା ଥାଏ ଅବିରତ ॥
ଗମ୍ଭୀର ବିବେକ ବୁଦ୍ଧି ନିର୍ମମ ବିରାଗୀ ।
ପାପପୁଣ୍ୟ ସୁଖ ଦୁଃଖେ ନ ହୁଅନ୍ତି ଭାଗୀ ॥
ଆତ୍ମାପ୍ରତ୍ୟକ୍ଷ ଜ୍ଞାନକୁ କରନ୍ତି ବିଗ୍ରହ ।
ପରୋକ୍ଷଭାବକୁ ହୃଦୁ ତେଜନ୍ତି ନିଶ୍ଚର ॥
ପ୍ରଭୁପରମାତ୍ମା ପଦେ ହୋଇଣ ଭାବିତ ।
କାମ୍ୟ କର୍ମାଦି ପଥରେ ନୁହନ୍ତି ଚିନ୍ତିତ ॥
କୁମ୍ଭୀବୃକ୍ଷର ବଲ୍କଳ କୌପୀନ ଗ୍ରହଣ ।
ଶିରେ ମୁକୁଳିତ କେଶ ଜଟା ଯେ ଧାରଣ ॥
ଅନ୍ୟ ବସ୍ତ୍ର ସ୍ୱଅଙ୍ଗରେ ନୁହନ୍ତି ଭୂଷିତ ।
ଦଣ୍ଡ କୌପୀନ ଧାରଣେ ହୁଏ ସୁଶୋଭିତ ॥
ଏହୁ ଅବଧୂତ ସାଧୁ ସନ୍ନ୍ୟାସ ଲକ୍ଷଣ ।
ଅନିକେତଭାବେ ଭ୍ରମୁଥାନ୍ତି ଅନୁକ୍ଷଣ ॥
ସେହୁ ସର୍ବ ଅଭ୍ୟାଗତ ପରମ ଅତିଥି ।
ଜଗତମଙ୍ଗଳାକାଙ୍କ୍ଷୀ ସେହୁ ଅବଧୂତ । ୫୦ ।
ଶ୍ରବଣ ମନନ ନିଦିଧ୍ୟାସନ ପ୍ରକାରେ ।
ଏକ ଅଲେଖ ବ୍ରହ୍ମଙ୍କୁ ସ୍ମରନ୍ତି ଚିତ୍ତରେ ॥
ଅବଧାରଣ କରନ୍ତି ବେଦାନ୍ତ ତାତ୍ପର୍ଯ୍ୟ ।
ଷଡ଼ବିଧ ଅଙ୍ଗେ ଯାହା ହୋଇଛି ବିଗ୍ରହ ॥

ଅଦ୍ୱିତୀୟ ବ୍ରହ୍ମ ବସ୍ତୁ ପ୍ରବାହ ଯୁକ୍ତରେ ।
ଅନୁବ୍ରତେ ଚିନ୍ତା କରୁଥାନ୍ତି ହୃଦୟରେ ॥
ଦ୍ୱିତୀୟ ନାମରୂପ କରନ୍ତି ବର୍ଜନ ।
ଅଦ୍ୱିତୀୟ ଆତ୍ମାବ୍ରହ୍ମେ 'ସ୍ୱ'ଭାବଚିନ୍ତନ ॥
ଜ୍ଞାନ ଯୋଗାଙ୍ଗ ଯେ ପଞ୍ଚଦଶ ପ୍ରକାରରେ ।
ଅଭ୍ୟାସ କରନ୍ତି ତାହା ଯତ୍ନସହକାରେ ॥
ଜ୍ଞାନଦୀପେ ମୋହ ଅନ୍ଧକାର ହୁଏ ନାଶ ।
ଚିଦାତ୍ମ ଚିତ୍ତରେ ସଦା ହୁଅଇ ପ୍ରକାଶ ॥
ବାହ୍ୟ ଉପବୀତ ମାଳା କରି ନିବାରଣ ।
ବ୍ରହ୍ମଭାବମୟ ସୂତ୍ର କରନ୍ତି ଧାରଣ ॥
ଜ୍ଞାନମୟୀ ଉପବୀତ ମାଳସ୍କନ୍ଧେ ବହି ।
ବ୍ରହ୍ମଣ୍ୟସ୍ୱରୂପେ ସେହୁ ଭ୍ରମୁଥାନ୍ତି ମହୀ ॥
ଜ୍ଞାନଯଜ୍ଞରେ କରନ୍ତି ଆତ୍ମା ନିବେଦନ ।
ସମସ୍ତ କର୍ମ ତହିଁରେ ହୁଅଇ ଦହନ ॥
ଅଟଳଶି ଅପରବ୍ରହ୍ମ ମୁଖରେ ଉଚ୍ଚାରି ।
ଭିକ୍ଷାଜୀବୀ ହୋଇ ମହୀ ପର୍ଯ୍ୟଟନ କରି ॥
ବ୍ରହ୍ମରେ ଅଚଳାଭକ୍ତି କରଣି ସ୍ଥାପନ ।
ଅଭେଦଭାବେ ଆତ୍ମାକୁ କରନ୍ତି ଦର୍ଶନ ॥
ସେହି ଅବଧୂତ ସାଧୁ ଲୋକହିତାର୍ଥରେ ।
ସତ୍ୟଧର୍ମ ପ୍ରଚାର କରନ୍ତି ଜଗତରେ ॥
ବ୍ରହ୍ମଜ୍ଞାନ ଭକ୍ତି ଯୋଗ ଦିଅନ୍ତି ଉପଦେଶ ।
ମାୟା ସଂସାରର ସବ ନାଶନ୍ତି କଳୁଷ ॥
କାମିନୀ ସଙ୍ଗରେ କେବେ ନ କରନ୍ତି ବାସ ।
ସ୍ତ୍ରୀର ସ୍ୱରୂପକୁ ଯତ ନ କରେ ସ୍ମରଣ ॥

କୁଣପସଦୃଶ ଅଟେ ନାରୀର ସୌନ୍ଦର୍ଯ୍ୟ ।
ହୃଦୟରେ ବିଚାରି ଯେ କରନ୍ତି ନିର୍ଦ୍ଧାର୍ଯ୍ୟ ॥
ନରକର ଦୁଃଖ ହୁଏ ନାରୀର ସଙ୍ଗମେ ।
ଅଙ୍ଗଗଣ ନଷ୍ଟ ରହିଥାନ୍ତି ସେହି କାମେ ॥
ଯେଉଁ ତ୍ୟାଗୀ ନାରୀ ସଙ୍ଗେ ଧର୍ମ୍ମ କରେ ନଷ୍ଟ ।
ମହାନିନ୍ଦସ୍ୱରୂପ ସେହି ହୁଏ ପରିଭ୍ରଷ୍ଟ ॥
କାମାତୁରଜନ ପ୍ରାୟ ହୋଇଣି ଭ୍ରମନ୍ତି ।
ଅଧୋଧଃଦେଶରେ ଯାଇଁ ହୁଅନ୍ତି ପତିତ ॥
ଯତିଗଣ ଗୃହାଙ୍ଗନା ଗୃହର ମଧ୍ୟରେ ।
ପ୍ରବେଶ କରନ୍ତି ନାହିଁ ଗୁରୁଙ୍କ ଆଜ୍ଞାରେ ।
ଧର୍ମ୍ମପଥେ ରହି ଭିକ୍ଷା ଯାଚ୍ଞା କରନ୍ତି ।
ପିତାମାତା ସମ୍ବୋଧନ ବାକ୍ୟ କହିଥାନ୍ତି ॥
ନାରୀ ଆବାସ ସ୍ଥଳରେ ନ କରନ୍ତି ବାସ ।
ନିର୍ଜ୍ଜନ ସ୍ଥାନରେ ଯାଇ କରନ୍ତି ନିବାସ ॥
ଗୋଶାଳା ବିଦ୍ୟାଳୟ ଧର୍ମଶାଳା ଆଦି ।
କାମିନୀକାଞ୍ଚନ ଶୂନ୍ୟଗୃହ ପିଣ୍ଡାଆଦି ॥
ଗ୍ରାମାନ୍ତର ବୃକ୍ଷମୂଳ ନିଷ୍ଫଳ ସ୍ଥାନରେ ।
ସତ୍ୟଧର୍ମାଶ୍ରମ ତୁଙ୍ଗି ଭଜନାଳୟରେ ॥
ଏହି ସ୍ଥାନମାନଙ୍କରେ କରନ୍ତି ବିଶ୍ରାମ ।
ଶତ୍ରୁଙ୍କୁ ବ୍ରହ୍ମରେ ସଦା ରଖନ୍ତି ସଂଯମ ॥
ଏକ ଏକ ଗ୍ରାମେ ଏକ ଦିବସ ରହନ୍ତି ।
ଏକସ୍ଥାନେ ବେଳନ ସ୍ୱନ ବାସ ନ କରନ୍ତି ॥
ସର୍ବଦା ଅତିଥିଭାବେ କରନ୍ତି ଭ୍ରମଣ ।
ସେହି ସନ୍ନ୍ୟାସ ଅଟନ୍ତି ପରମ ନିର୍ଗୁଣ ॥

ମଠାଦି ସ୍ଥାପନ ନ କରନ୍ତି ଏକସ୍ଥାନେ ।
ବସ୍ତୁସ୍ତାଭାବ ଲଭନ୍ତି କାମିନୀକାଞ୍ଚନେ ॥
ସନ୍ନ୍ୟାସ ହୋଇ ଯେ ଜନେ ଏକସ୍ଥାନେ ବାସ ।
ଅତଥି ଧର୍ମ ପାଳନେ କରଇ ଅଳସ ॥
ସମାଜରେ ଧର୍ମ ଅବିଶ୍ୱାସୀ ସେହି ଜନ ।
ପରସନ୍ନ୍ୟାସ ପଦକୁ କରଇ ଭଞ୍ଜନ ॥
ଯେ ଯତି ସଞ୍ଚୟ କରେ ଅର୍ଥାଦି କାଞ୍ଚନ ।
ଭୟ ପଦରେ ରହଇ ତାହାର ଜୀବନ ॥
ଅଭୟ ଅମୃତ ପଦ ନ ହୁଏ ପ୍ରାପତ ।
ସନ୍ନ୍ୟାସ ଧର୍ମରୁ ସେହୁ ହୁଅଇ ସ୍ଖଳିତ ॥
ଅବଧୂତ ଯତି ମୁଦ୍ରା ରୌପ୍ୟାଦି କାଞ୍ଚନ ।
ହସ୍ତରେ କଦାଚ ତାହା ନ କରେ ସ୍ପର୍ଶନ ॥
ଲେଷ୍ଟ୍ରବତ୍ ତାହା ସଙ୍ଗ ତେଜନ୍ତି ଦୂରରେ ।
ନିର୍ମଳସୁରତ୍ୱ ଭାବେ ଭ୍ରମନ୍ତି ସଂସାରେ ॥
ଇଚ୍ଛା ଅନିଚ୍ଛାରେ ଅର୍ଥ ହୋଇଲେ ପ୍ରାପତ ।
ଯଥାର୍ଥ କାର୍ଯ୍ୟରେ ତାହା କରନ୍ତି ବ୍ୟୟିତ ॥
ବିଷୟୀ ଲାଳସୀଜନଙ୍କର ପ୍ରତାରଣେ ।
ଭ୍ରମ ନ ହୁଅନ୍ତି ସାଧୁ ସେ ସନ୍ନ୍ୟାସିଗଣେ ॥
ଭିକ୍ଷା ଦ୍ରବ୍ୟମାନ ଯତି ନ କରେ ସଞ୍ଚୟ ।
ଯଦୃଚ୍ଛା ଲାଭରେ ତୁଷ୍ଟ ହୁଅଇ ନିଶ୍ଚୟ ॥
ଯାଚଞ୍ଚା ବା ଅଯାଚଞ୍ଚା ଗୃହୀଙ୍କର ଦ୍ୱାରେ ।
ପକ୍ୱାନ୍ନ ବ୍ୟଞ୍ଜନ ଭିକ୍ଷା କରନ୍ତି ସଧୀରେ ॥
ଉତ୍ତମ ବା ଅନୁତ୍ତମ ନ ଭାବନ୍ତି ମନେ ।
ସନ୍ତୋଷେ ଭୁଞ୍ଜନ୍ତି ଯତି ସ୍ୱଭାବ ଶାନ୍ତନେ ॥

ଅନନ୍ତ ଆକାଶ ତଳେ ଧର୍ମର ମାର୍ଗରେ ॥
ଭିକ୍ଷା ଗ୍ରହଣ କରନ୍ତି ଯତି ସ୍ୱଳ୍ପସ୍ଥାରେ ।
ନୂତନ ମୃତ୍ତିକା ପାତ୍ରେ ବସ୍ତ୍ରାପତ୍ରାଦିରେ ॥
ଅହାରାଦ୍ଧ ଦ୍ରବ୍ୟମାନ ରଖାଇ ତହିଁରେ ।୯୦।
ସମସ୍ତ ଦ୍ରବ୍ୟରୁ ଅଂଶ କରପତ୍ରେ ଧରି ।
ମହିମା ଅଲେଖ ପରଂବ୍ରହ୍ମଙ୍କୁ ସୁମରି ॥
ସାନନ୍ଦ ଚିତ୍ତରେ ଭିକ୍ଷା କରନ୍ତି ଗ୍ରହଣ ।
ତନ୍ମଧ୍ୟରେ ବର୍ଜିଥାନ୍ତି ଅନ୍ୟ ସମ୍ଭାଷଣ ॥
ତଦନ୍ତରେ ମୁଖ ହସ୍ତ ଧୌତ କରି ନୀରେ ।
କରପତ୍ର ଯୋଡ଼ି ଉଭା ହୁଅନ୍ତି ସଧୀରେ ॥
ଭିକ୍ଷାପ୍ରଦାତା ନିମିତ୍ତ ମଙ୍ଗଳ ଭାବନା ।
ଅଲେଖ ପ୍ରଭୁଙ୍କଠାରେ କରନ୍ତି ପ୍ରାର୍ଥନା ॥
ଏକ ଗୃହେ ଭିକ୍ଷା ଏକ ବାରେକ କରନ୍ତି ।
ଦ୍ୱିତୀୟ ବାର ନିମିତ୍ତ ମାନସ ଟେକନ୍ତି ॥
ଅପ୍ରାପ୍ତ ହୋଇଲେ ଭିକ୍ଷା ଗ୍ରାମର ମଧ୍ୟରେ ।
ଗ୍ରାମର ଅନିଷ୍ଟ ଚିନ୍ତା ନ କରନ୍ତି ବାରେ ॥
ଜଳାଶୟ ମଧ୍ୟୁଁ ଜଳ କରଣ ଅପାନ ।
ଜଗତମଙ୍ଗଳାକାଙ୍କ୍ଷୀ ହୁଅନ୍ତି ସେ ଜନ ॥
ଧାତୁ ପାତ୍ରାଦିରେ ଯତି ନ କରେ ଗ୍ରହଣ ।
ଏକାନ୍ତ ଭାବରେ କରୁଥାନ୍ତି ବିଚରଣ ॥
ଗୃହାଙ୍ଗଣ ମଧ୍ୟେ ଅବା ଗୃହଛାୟା ତଳେ ।
ଅବଧୂତ ସାଧୁ ନ ଭୁଞ୍ଜନ୍ତି କଦାକାଳେ ॥
ଯେହୁ ସାଧୁ କରେ ଧାତୁପାତ୍ରରେ ଭୋଜନ ।
ଅଥବା ଗୃହ ମଧ୍ୟରେ କରେ ଭକ୍ଷପାନ । ୧୦୦ ।

ଗୃହସ୍ଥଙ୍କ ଦୋଷରେ ସେ ହୁଅନ୍ତି କଳଙ୍କିତ ।
ଅସାଧୁଜନଙ୍କ ସଙ୍ଗେ ରହନ୍ତି ପଣ୍ଡିତ ॥
ଯେ କୌପୀନଧାରୀ କରେ ତାମ୍ବୁଲ ଭକ୍ଷଣ ।
ବୃଥା ନାରୀଦର୍ଶନ ତାହାର ଜୀବନ ॥
ବାହ୍ୟଆଡ଼ମ୍ବରେ ହୋଇଥାଏ ବେଶଧାରୀ ।
ପ୍ରକୃତଗଣଙ୍କୁ ସେହୁ ନ ପାରେ ଜାଣିବାରି ॥
ସ୍ୱୟଂ ରନ୍ଧନ କରି ଯେ କରଇ ଭୋଜନ ।
ବ୍ୟର୍ଥ ଅଟଇ ତାର ସନ୍ନ୍ୟାସଜୀବନ ॥
ସୁସାଧୁ ସନ୍ନ୍ୟାସୀ ଗୁରୁ ଶାସ୍ତ୍ରୋକ୍ତ ମାର୍ଗରେ ।
ଭିକ୍ଷା ଗ୍ରହଣ କରନ୍ତି ବିଧିବିଧାନରେ ॥
ଅମେଧ ସଙ୍କଳ୍ପ ଦ୍ରବ୍ୟ ନ କରେ ଭୋଜନ ।
ନଷିଦ୍ଧ ଗୃହର ଦ୍ରବ୍ୟ ତ୍ୟଜଇ ବଚନ ॥
ସାୟଂ ସନ୍ଧ୍ୟାକାଳ ଆସି ହେଲେ ଉପଗତ ।
ସମିଧାଗ୍ନି ଦ୍ୱାରା ଧୁନି କରନ୍ତି ସ୍ଥାପିତ ॥
ପ୍ରାତଃକାଳେ ସେ ଧୁନିକୁ ଯତ୍ନରେ ଲିଭାଇ ।
ଭିକ୍ଷା ଗ୍ରହଣ କରନ୍ତି ଆଶ୍ରମରୁ ଯାଇ ॥
ତଦନ୍ତେ ସେ ଗ୍ରାମ ତ୍ୟାଗ କରି ଅନ୍ୟ ସ୍ଥାନେ ।
ଗମନ କରନ୍ତି ଯତି ସ୍ୱଧର୍ମ ବିଧାନେ ॥
ଶୟନ ଉପବେଶନ ଭୂତଳ ପୃଷ୍ଠରେ ।
ସୁଖ ବିଳାସ ଆସନ ତେଜନ୍ତି ସୁଦୂରେ ॥
ସ୍ୱପଦବ୍ରଜରେ ଯତି ଗମନ କରନ୍ତି ।
ଯାନ ବାହନ ପାଦୁକା ଦୂରରେ ତେଜନ୍ତି ।
ପଦବ୍ରଜରେ କରନ୍ତି ଜଗତ ପବିତ୍ର ।
ବ୍ରହ୍ମ ସ୍ମରଣ ବ୍ୟତୀତ ନ ଭଜେ ଅନ୍ୟତ୍ର ॥

ସନ୍ନ୍ୟାସୀ ଯେ ସାୟଂ ପ୍ରାତଃ ବ୍ରାହ୍ମ ମୁହୂର୍ତ୍ତରେ ।
ଦର୍ଶନେ ଭଜନେ ମଜ୍ଜି ଥାନ୍ତି ଏକାନ୍ତରେ ॥
ଜଗତ ପ୍ରାଣୀମାନଙ୍କ ମଙ୍ଗଳ ନିମିତ୍ତ ।
ପ୍ରଭୁଙ୍କଠାରେ ପ୍ରାର୍ଥନା କରନ୍ତି ସତତ ॥
ବ୍ରହ୍ମବିଦ୍ୟା ଭିନ୍ନ ଅନ୍ୟ ବିଦ୍ୟାମାନ ଯେତେ ।
ବର୍ଜ୍ଜନ କରନ୍ତି ଯତି ତାହା ଶୁଦ୍ଧ ଚିତ୍ତେ ।
ଯେ କରନ୍ତି ଜ୍ୟୋତିଷାଦି ବିଦ୍ୟାର ସାଧନ ।
ବୈଦ୍ୟବୃତ୍ତି କରି ଯେହୁ ହରନ୍ତି ଜୀବନ ॥
କୁଟ ତର୍କଶାସ୍ତ୍ର କରନ୍ତି ଯେ ଅଧ୍ୟୟନ ।
ପ୍ରକୃତ ସନ୍ନ୍ୟାସୀପଦେ ନୁହନ୍ତି ଭାଜନ ॥
ଯଜ୍ଞ ଶ୍ରାଦ୍ଧ ପ୍ରେତକ୍ରିୟା ହିଂସାବୃତ୍ତି ଯହିଁ ।
ଅନୁଷ୍ଠିତ ହୁଏ ଯତି ନ ଗମନ୍ତି ତହିଁ ॥
ତାଳପତ୍ର ପଙ୍ଖା କରେ କରନ୍ତି ଧାରଣ ।
ତହିଁରେ ଖରା ବରଷା କରି ନିବାରଣ ॥
ଅନ୍ୟ ପଙ୍ଖା ଛତ୍ରାଦିକୁ ନ କରି ଧାରଣ ।
ନିଃଶଙ୍କ ହୋଇଣ ଯତି କରନ୍ତି ଭ୍ରମଣ ॥
ପାଦାଗ୍ରରେ ଦୃଷ୍ଟି ସ୍ଥାପି କରନ୍ତି ଗମନ ।
ବିଚଳିତ ନୁହେ ତାଙ୍କ ବଚନ ନୟନ । ୧୨୦ ।
ଜଗତର ସର୍ବଜନ ମଙ୍ଗଳ ବିଧାନେ ।
ଉଦାସ ଭାବରେ ଭ୍ରମୁଥାନ୍ତି ସର୍ବ ସ୍ଥାନେ ॥
ଅହଂ ମମ ପଦ ସଦା ହୁଏ ବିସ୍ମରଣ ।
ସେହୁ ସନ୍ନ୍ୟାସୀ ଲଭନ୍ତି ପରମ କାରଣ ॥
କୌଣସି ଜୀବକୁ ନ କରନ୍ତି ଅଚରଣ ।
ଭିକ୍ଷାରେ ଦେହ ଜୀବନ କରନ୍ତି ଧାରଣ ॥

ବିଷୟ୍ରେ ଲୋଲୁପ ନ ହୁଅନ୍ତି କଦାଚିତେ ।
ଜୀବନ୍ତରେ ଭ୍ରମଣ କରନ୍ତି ଲୋକହିତେ ॥
ତାହାଙ୍କ ହୃଦୟ ଅଟେ ଜ୍ଞାନର ସାଗର ।
ସିଦ୍ଧ ମୁନିପଦେ ସେହୁ ଅଟନ୍ତି ସୁସ୍ଥିର ॥
ପରମ ବିବେକ ବୁଦ୍ଧି ଅଟଇ ପ୍ରାପ୍ତ ।
ମୁଦିତ ମାନସ ସଦା ନିଷ୍କାମହୃଦୟ ॥
ସଂସାର ରଙ୍ଗ ରହସ୍ୟ ନ କରେ ଦର୍ଶନ ।
ସେହୁ ସୌମ୍ୟ ମୂର୍ତ୍ତିଧାରୀ ଅଟେ ମହାଜନ ॥
ଅବଧୂତ ସନ୍ନ୍ୟାସ ଲକ୍ଷଣମାନ ଯେତେ ।
ସମ୍ପୂର୍ଣ୍ଣ ଭାବେ ସାଧନ କରେ ଯେ ନିରତେ ॥
ସମ୍ପୂର୍ଣ୍ଣ ଶୀତାଂଶୁ ତୁଲ୍ୟ ଅଟେ ସେହୁ ଯତି ।
ସର୍ବଜନ ପଜନୀୟ ସେହୁ ମହାମତି ॥
ସର୍ବାରାଧ୍ୟ ଗୁରୁ ସର୍ବଜନ ଶୁଭପ୍ରଦ ।
ମୁମୁକ୍ଷୁ ବ୍ୟକ୍ତିର ସେହୁ ଅଟନ୍ତି ଆସ୍ପଦ ।୧୩୦।
ଜୀବନ୍ମୁକ୍ତ ପୁରୁଷ ସେ ବ୍ରହ୍ମର୍ଷି ବ୍ରହ୍ମଣ୍ୟ ।
ଧର୍ମଗୁରୁପଦେ ସେହୁ ହୁଅନ୍ତି ଗଣନ ॥
ସର୍ବଶାସ୍ତ୍ର ସାର ଅର୍ଥ କରଣ ଗ୍ରହଣ ।
ସ୍ୱୟଂ ବ୍ରହ୍ମନିଷ୍ଠ ହୋଇ କରନ୍ତି ପାଳନ ॥
ଧର୍ମ ସମାଜରେ ତାହା କରନ୍ତି ସ୍ଥାପନ ।
ଅଗ୍ରଗଣ୍ୟପଦରେ ସେହୁ ହୁଅନ୍ତି କୀର୍ତ୍ତିନ ॥
ସେହୁ ସିଦ୍ଧ ସାଧୁଜନଙ୍କର ଦର୍ଶନରେ ।
ଅଶେଷ କଲୁଷ ନାଶ ହୁଅଇ ସତ୍ୱରେ ॥
ତାହାଙ୍କ ପୟରେ କଲେ ଭକ୍ତିରେ ପ୍ରଣାମ ।
ପରମ କଲ୍ୟାଣ ପଦେ ହୁଅଇ ସଂଗମ ॥

ଯେହୁ ସେ ମହତ ଜନଙ୍କର ପାଦରେଣୁ ।
ଶିରରେ ବହନ କରି ଲିପ୍ତ କରେ ତନୁ ॥
ନିଷ୍କାମ ଭକ୍ତିପଦକୁ ହୁଅଇ ଭାଜନ ।
ସେହି ପାଦସେବାଦ୍ୱାରା ଜ୍ଞାନର ଅର୍ଜନ ॥
ସାଧୁ ପାଦପ୍ରକ୍ଷାଳନ ଜଳ କଲେ ପାନ ।
ସର୍ବ ତୀର୍ଥଫଳ ଲାଭ ହୁଅଇ ବହନ ॥
ଭୋଜନ ପାନାଦି କଲେ ସନ୍ତୋଷେ ପ୍ରଦାନ ।
ସ୍ୱସ୍ୱ ଶ୍ରେୟ ବୃଦ୍ଧି ଲଭି ଘଟଇ ଯତନ ॥
ସୁବିବେକ ବିଗ୍ରହରେ କଲେ ସମ୍ଭାଷଣ ।
ଅବିଦ୍ୟା ବନ୍ଧନ ସର୍ବ ହୁଏ ନିବାରଣ ।୧୪୦।
ବ୍ରହ୍ମନିଷ୍ଠ ସନ୍ନ୍ୟାସୀ ଯେ ଲୋକହିତାର୍ଥରେ ।
ଶରୀର ଧାରଣ କରିଥାନ୍ତି ସଂସାରରେ ॥
ଭୋଜନ ପାନ ଶୟନ କିମ୍ବା ଆଦି ଯେତେ ।
କରନ୍ତି ସଂସାରଜନ ମଙ୍ଗଳ ନିମନ୍ତେ ॥
ନିଜ ଉପଭୋଗାର୍ଥକୁ ନ କରି ଚିନ୍ତନ ।
ସର୍ବ ତ୍ୟାଗ କରି ହୋଇଥାନ୍ତି ଉଦାସୀନ ॥
ପରିବ୍ରାଜକ ପରମହଂସ ଅବଧୂତ ।
ଅହରହଃ ବ୍ରହ୍ମଭାବେ ହୁଅନ୍ତି ମଜ୍ଜିତ ॥
ବ୍ରହ୍ମନିଷ୍ଠ ହୋଇ ବ୍ରହ୍ମେ ହୁଅନ୍ତି ମିଳନ ।
ଦୁଃଖ ସଂସାରେ ନ ହୁଏ ପୁନରାଗମନ ॥
କୈବଲ୍ୟ ମୁକ୍ତିପଦକୁ ହୁଅନ୍ତି ପ୍ରାପତ ।
ଶୁଭାଶୁଭ ବାସନା ଯେ ହୁଅଇ ନିବୃତ୍ତ ॥
ବ୍ରହ୍ମନିଷ୍ଠ ସାଧୁଙ୍କୁ ଯେ କରୁଥାନ୍ତି ସ୍ତୁତ ।
ସେ ନିଶ୍ଚେ ଆଗାମୀ ଶୁଭ ଫଳକୁ ଭୁଞ୍ଜନ୍ତି ॥

ଯେଉଁମାନେ ସୁସାଧୁଙ୍କୁ କରନ୍ତି ନିନ୍ଦନ ।
ଦ୍ୱେଷଭାବ ବହି ଦୁଃଖ କରନ୍ତି ପ୍ରଦାନ ॥
ସେହିମାନେ ସାଧୁଙ୍କର ଅଗାମୀ କର୍ମକୁ ।
ଗଚ୍ଛିତ ହୁଅନ୍ତି ସର୍ବ ପାପ ବିଷଯୁକ୍ତ ॥
ଅମ୍ବଜ୍ଞାନୀ ସନ୍ନ୍ୟାସୀ ଯେ ସଂସାରୁ ଉଦ୍ଧାର ।
ନିବାସ କରନ୍ତି ଯାଇ ବ୍ରହ୍ମାନନ୍ଦପୁର ।୮୫୦।
ଶୀତରୋଗ ଉପବାସ୍ଥେ ଯେ ସ୍ୱଚ୍ଛନ୍ଦ ପ୍ରକାରେ ।
ରୋଗାକ୍ରାନ୍ତ ମୂର୍ଚ୍ଛିତ ବା ଲୁଣ୍ଠିତ ଭୂମିରେ ॥
ସଚେତନ ଥିଲେ ଅବା ସ୍ମୃତିଭଙ୍ଗ ହେଲେ ।
ଯେଉଁ ଯେଉଁ ସ୍ଥାନେ ଯତି ଦେହ ବିସର୍ଜିଲେ ॥
ବ୍ରହ୍ମନିଷ୍ଠ ବ୍ରହ୍ମ ପ୍ରାପ୍ତି ହୁଏ ଅଚିରେ ।
ଭ୍ରମ ନୁହଇ ତାଙ୍କର ମାୟାର ଭ୍ରମରେ ॥
ଅବିନାଶୀ ପରଂଧାମ ହୁଅନ୍ତି ପ୍ରାପତ ।
ସିଦ୍ଧ ଯୋଗୀ ସଂସାରକୁ ନୁହେ ପ୍ରତ୍ୟାବୃତ୍ତ ॥
ଜ୍ଞାନ ଅଗ୍ନିରେ ତାଙ୍କର ବିବିଧ ଶରୀର ।
ଦଗ୍ଧୀଭୂତ ହୋଇଥାଏ ସମସ୍ତ କିଂଶ୍ୱର ॥
ଅନ୍ତ୍ୟେଷ୍ଟି କ୍ରିୟା ତାଙ୍କର ନୁହେ ପ୍ରୟୋଜନ ।
ଜ୍ଞାନୀର ଦେହ ଅଟଇ ସମାଧିଭାଜନ ॥
ସଂପୂଜିତଭାବେ ସାଧୁ ସନ୍ନ୍ୟାସୀ ଦେହକୁ ।
ଭୂଗର୍ଭ ମଧ୍ୟେ ସମାଧି କରିବ ତାହାକୁ ॥
ଶୁଦ୍ଧିଶ୍ରାଦ୍ଧ କ୍ରିୟା ନ କରିବ ଆଚରଣ ।
ବାହ୍ୟାଭ୍ୟନ୍ତରେ କରିବ ପ୍ରଭୁଙ୍କ ସ୍ମରଣ ॥
ଯେତେ ବ୍ରହ୍ମ ଧର୍ମନିଷ୍ଠ ଅବଧୂତ ଯତି ।
ମହା ମହିମାରେ ସେହୁ ବିଲୀନ ହୁଅନ୍ତି ॥

ସନ୍ନ୍ୟାସ ଆଶ୍ରମ ଯେହୁ ଗ୍ରହଣ କରଣ ।
ସ୍ୱଧର୍ମକୁ ଦୃଢ଼ଭାବେ ନ କରେ ପାଳନ ।୧୬୦।
ତୁଚ୍ଛାରୂଢ ଜ୍ଞାନ ତାର ହୁଅଇ ବିଫଳ ।
ସଂସାରକୁ ପ୍ରତ୍ୟାଗତ ହୁଏ ସେ କେବଳ ॥
ସ୍ୱପ୍ରତିଷ୍ଠା ନିମିତ୍ତରେ ହୋଇଲେ ସନ୍ନ୍ୟାସୀ ।
ଧର୍ମପନ୍ଥାର ଯେ ସେହୁ ହୁଅଇ ବିଦ୍ୱେଷୀ ॥
ଦ୍ରବ୍ୟ ଅନ୍ନ ବସ୍ତ୍ରାର୍ଥରେ ହେଲେ ଗୃହତ୍ୟାଗୀ ।
ଅନ୍ନଦାତାଙ୍କର ପାପେ ହୁଅଇ ସେ ଭାଗୀ ॥
ଉଭୟ ପନ୍ଥାରୁ ନଷ୍ଟେ ହୁଅଇ ବଞ୍ଚିତ ।
ପରମ ଧାମକୁ କେଭେ ନୁହଇ ପ୍ରାପତ ॥
ପରପାକରେ ଭୋଜନ କରିବା ଅର୍ଥରେ ।
କପଟେ ଯେ ସନ୍ନ୍ୟାସୀଙ୍କ ରୂପ ଭେକ ଧରେ ॥
ପରଲୋକରେ ସେ ଜନ ପଶ୍ୱାଦି ଯୋନିରେ ।
ଜନ୍ମ ଲଭି ବହୁ କ୍ଲେଶ ଲଭଇ ସଂସାରେ ॥
ବୈରାଗ୍ୟ ଭାବ ନ ଥାଇ ହୋଇଲେ ସନ୍ନ୍ୟାସୀ ।
ଆଶାପାଶରେ ବନ୍ଧନ ହୁଏ ସେ ଉଦାସୀ ॥
ଲୋକାନୁଚର ଭାବରେ କରେ ବିଚରଣ ।
କେବେହେଁ ଲଭି ନ ପାରେ ମୁକ୍ତିର କାରଣ ॥
ଯେଉଁ ବ୍ୟକ୍ତି ଗୃହାଶ୍ରମଧର୍ମ ତ୍ୟାଗ କରି ।
ପ୍ରବ୍ରଜ୍ୟାଶ୍ରମରେ ହୋଇଥାଏ ବ୍ରତଧାରୀ ॥
ସନ୍ନ୍ୟାସପନ୍ଥାରୁ ଯଦି ହୁଅଇ ବିଭ୍ରଷ୍ଟ ।
ଗୃହସ୍ଥାଶ୍ରମରେ ଯାଇ ହୁଅଇ ପ୍ରବିଷ୍ଟ । ୭୦ ।
ସର୍ବ ଧର୍ମ କର୍ମ ତାର ହୁଅଇ ବିନାଶ ।
ଇହ ପରଜନ୍ମେ ସେହୁ ଲଭେ ବହୁ କ୍ଲେଶ ॥

ଅଦ୍ୱୈତ ପରମ ତତ୍ତ୍ୱ ହୋଇ ଅବଗତ ।
ଯଥେଚ୍ଛାଚରଣ କର୍ମେ ଯେ ହୁଅଇ ରତ ॥
ଶ୍ୱାନତୁଲ୍ୟ ଅଟଇ ଯେ ତାହାର ଜୀବନ ।
ତ୍ୟାଜ୍ୟ ଅଶୁଚ କର୍ମ୍ମକୁ କରଇ ଯତନ ॥
ସନ୍ନ୍ୟାସୀ ହୋଇ ଯେ ଜନ୍ମଭୂମି ନ ତେଜଇ ।
କୁଟୀରର ପ୍ରାୟ ସ୍ୱଦେଶରେ ଭ୍ରମୁଥାଇ ॥
କେବେ ଅବା ସ୍ୱଗ୍ରାମର ସ୍ଥାନକୁ ଗମଇ ।
ଅବଧୂତ ସନ୍ନ୍ୟାସୀ ସେ କେବେ ନ ହୁଅଇ ॥
ତ୍ୟକ୍ତ ବିଷୟୁ ଯେ କରେ ପୁନଶ୍ଚ ଗ୍ରହଣ ।
ତ୍ୟାଗୋଚ୍ଛିଷ୍ଟ ଦ୍ରବ୍ୟ ସେହୁ କରଇ ଭକ୍ଷଣ ॥
ପ୍ରକୃତ ବୈରାଗ୍ୟ ଭାବେ ଯେ କରେ ସନ୍ନ୍ୟାସ ।
ନିଷିଧ କର୍ମ୍ମ ତାହାର ହୁଅଇ ବିନାଶ ॥
ପୂର୍ବ୍ବ ଶତ ପୁରୁଷକୁ ତାରଇ ସେ ଯତି ।
ବ୍ରହ୍ମନିଷ୍ଠାରେ ବ୍ୟାପଇ ତାହାର ବିଭୂତି ॥
ଜ୍ଞାନ ବୈରାଗ୍ୟ ସାଧନ ଶ୍ରଦ୍ଧାଦି ସମସ୍ତ ।
ଏହି ସମସ୍ତକୁ ଯତି କରଇ ଅଭ୍ୟସ୍ତ ॥
ଯତିର ବନ୍ଧୁ ଯେ ସତ୍ୟାକାର ତ୍ରୟୋଦଶ ।
ଏହାଙ୍କୁ ନ ତେଜେ କେବେଁ ପରମ ସନ୍ନ୍ୟାସ ।୧୮୦।
ନରନାରୀଙ୍କୁ ଭାବନ୍ତି ପିତୃମାତୃସମ ।
ତ୍ୟାଜ୍ୟଗୃହ କୁଟୁମ୍ବଙ୍କ ନ କରେ ଚିନ୍ତନ ॥
ଜାତି କୁଳ ଅଭିମାନ ବରଜି ସୁଦୂରେ ।
ସତ୍ୟ ଧର୍ମ ପ୍ରଚାରାର୍ଥେ ଭ୍ରମନ୍ତି ସଂସାରେ ॥
ବ୍ରହ୍ମ ଅବଧୂତାଶ୍ରମ ସନ୍ନ୍ୟାସୀ ଯେ ଜନ ।
ବ୍ରହ୍ମଜ୍ଞାନ ଭକ୍ତିଯୋଗ କରନ୍ତି ପ୍ରଦାନ ॥

ଅନ୍ୟ କାମ୍ୟକର୍ମ ଯୋଗ ନ କରେ ସ୍ପୃହ ।
ଜଗତରେ ଗୁରୁରୂପେ ପୂଜ୍ୟ ସେହୁ ନର ॥
ବୋଧରଞ୍ଜୁର ସଦୃଶ ନୁହନ୍ତି ସେ ଯତ ।
ମନୁଷ୍ୟ ଅର୍ଦ୍ଧ ସମାଜେ ସେହୁ ମହାମତ ॥
ଜଗତ ମଙ୍ଗଳ ନିମିତ୍ତରେ ସାଧୁଜନ ।
ପ୍ରଭୁପାଦରେ ସର୍ବଦା କରନ୍ତି ପ୍ରାର୍ଥନ ॥
ପ୍ରାତଃ ସାୟଂ ଦର୍ଶନ ଭଜନ ସମୟରେ ।
ପ୍ରଭୁଙ୍କଠାରେ ଜଣାଣ କରନ୍ତି ନିତ୍ୟରେ ॥
ହେ ଅଲେଖ ବ୍ରହ୍ମ ରକ୍ଷା କର ଜୀବଗଣେ ।
ଶରଣ ପଶନ୍ତୁ ସର୍ବେ ତବ ଶ୍ରୀଚରଣେ ॥
ସର୍ବଜନଙ୍କୁ ଦୁଃଖରୁ କରନ୍ତୁ ଉଦ୍ଧାର ।
ସୂଦୟା କରନ୍ତୁ ଗୁରୁ ଶରଣାପଞ୍ଜର । ୧୯୦।
ସଦ୍‌ଜ୍ଞାନ ଭକତିଯୋଗ ସମସ୍ତ ହୃଦରେ ।
ଉଦ୍ଦୀପିତ ହେଉ ପ୍ରଭୁ ତୁମ୍ଭ ସୁକୃପାରେ ॥
ତବ ମହିମାରେ ସର୍ବେ ହୁଅନ୍ତୁ ପ୍ରକାଶ ।
ସର୍ବ ଅଜ୍ଞାନ ମୋହକୁ କରନ୍ତୁ ବିନାଶ ॥
ଅଧ ଊର୍ଦ୍ଧ୍ୱ ମଧ୍ୟେ ରହିଛନ୍ତି ଯେତେ ଜୀବ ।
ଅହରହଃ ଯେତେ ହେଉଅଛନ୍ତି ସମ୍ଭବ ॥
ସର୍ବଜୀବଙ୍କୁ କରନ୍ତୁ ସଂସାରୁ ଉଦ୍ଧାର ।
ମହାମହିମ ହେ ପ୍ରଭୁ ମହିମାସାଗର ॥
ଏ ଅଶେଷ ବ୍ରହ୍ମାଣ୍ଡର ଅଟ ରକ୍ଷାକାରୀ ।
ଭକ୍ତ ଜନଙ୍କର ସର୍ବ ଭବଭୟହାରୀ ॥
ହେ ଶରଣ୍ୟ ସନାତନ ମଙ୍ଗଳଦାୟକ ।
ଦେବାସୁରମାନଙ୍କର ବିଘ୍ନ ବିନାଶକ ॥

ତୁମ୍ଭ ଅଶେଷ ବ୍ରହ୍ମାଣ୍ଡ ତୁମ୍ଭେ ରକ୍ଷା କର ।
ଏହା ଜଣାଣ ସର୍ବଦା ଛବ ଶ୍ରୀପଦ୍ମର ॥
ଏହା ଭାବେ ସନ୍ନ୍ୟାସୀ ଯେ ସାଧୁ ଗୁରୁଜନ
ପ୍ରଭୁ ପଦ୍ମରେ ସର୍ବଦା କରନ୍ତି ପ୍ରାର୍ଥନ ॥
ସ୍ୱାର୍ଥ ନିମିତ୍ତ କଦାଚ ନ କର ସ୍ମରଣ ।
ସତ୍ୟ ମହିମା ପ୍ରକାଶେ କରନ୍ତି ଜଣାଣ ॥
ଯେଉଁ ସନ୍ନ୍ୟାସୀ ଜଗତ ମଙ୍ଗଳ ନିମିତ୍ତ ।
ପ୍ରଭୁ ପଦ୍ମରେ ପ୍ରାର୍ଥନା ନ କରେ ସତତ ॥୨୦୦॥
ପ୍ରଭୁଙ୍କ ମହିମା ମୁଖେ ନ କରେ ପ୍ରଚାର ।
ସ୍ୱଗର୍ବରେ ଗର୍ବିତ ହୁଅଇ ନିରନ୍ତର ॥
ନିଦ୍ରା ଆହାରରେ କରେ ଅଙ୍ଗକୁ ଅଳସ ।
ସଦ୍‌ଗୁରୁ ବଚନ ପ୍ରତି ନ କରେ ବିଶ୍ୱାସ ॥
ଉଦର ନିମିତ୍ତ ହୋଇଥାଏ ଭେକଧାରୀ ।
ଅଯଥା ବାକ୍ୟାଳାପରେ ବୃଥା କାଳ ହାରି ॥
ଏରୂପ ସନ୍ନ୍ୟାସୀ ନିଶ୍ଚେ ଭବକାରାଗାରେ ।
ବନ୍ଧନ ହୁଅଇ ସ୍ୱୟଂ ବିଧି ନିୟମରେ ॥
ବାହ୍ୟ ଆଡ଼ମ୍ବର ଭାବେ ଯେ ହୁଏ ସନ୍ନ୍ୟାସୀ ।
ସଂସାର ତୃଷ୍ଣା ଅନ୍ତରେ ଥାଏ ଅହର୍ନିଶି ॥
ତ୍ୟାଗ ବିଷୟକୁ କରେ ମନରେ ଭାବନା ।
ସେହି ଅଟଇ ସଂସାରୀ ମଧ୍ୟରେ ଗଣନା ॥
ଯେହୁ ବିବେକୀ ପ୍ରଗାଢ଼ ବୈରାଗ୍ୟବଳରେ ।
ବ୍ରହ୍ମନିଷ୍ଠା ଭକ୍ତି ଲଭେ ଗୁରୁଙ୍କ କୃପାରେ ॥
ବ୍ରହ୍ମ ଅବଧୂତାଶ୍ରମ ସନ୍ନ୍ୟାସୀ ହୁଅଇ ।
ପ୍ରବୃତ୍ତିକାବତାର ଗୁରୁ ଆଜ୍ଞା ଅନୁଯାୟୀ ।

ସେହି ସନ୍ନ୍ୟାସୀ ହୁଅନ୍ତି ମାୟାରୁ ଉଦ୍ଧାର ।
ଜଗତ ପ୍ରାଣୀମାନଙ୍କୁ କରନ୍ତି ନିସ୍ତାର ॥
ସେହି ପରମ ଅତିଥି ପରମ ମଙ୍ଗଳ ।
ତାହାଙ୍କ ଆଶ୍ରେରେ ହୁଏ ଜଗତ ମଙ୍ଗଳ ।୨୧୦।
ସେହି ପରମ ନିଷ୍କାମୀ ଯୋଗୀନ୍ଦ୍ର ସୁସାଧୁ ॥
ଅବଧୂତ ବାଚାରୂପେ ସେହି ଭକ୍ତବନ୍ଧୁ ।
ସେହି ଚିନ୍ମୟ ବ୍ରହ୍ମଙ୍କୁ କରନ୍ତି ପ୍ରାପତ ।
ସ୍ୱୟଂ ଚିନ୍ମୟ ବ୍ରହ୍ମରେ ହୁଅନ୍ତି ମିଳିତ ॥
ଚିନ୍ମୟ ଅଲେଖବ୍ରହ୍ମେ କରିଅଛୁ ଆଣ ।
ସେହି କୃପାରେ ଲଭିବ ପରମ ସନ୍ନ୍ୟାସ । ୨୧୩ ।

ଇତି ଶ୍ରୀମଚ୍ଚିନ୍ମୟ ବ୍ରହ୍ମଗୀତାୟାଂ ତ୍ୟାଗସନ୍ନ୍ୟାସଯୋଗ
କଥନେ, ଅବଧୂତ ସନ୍ନ୍ୟାସାଶ୍ରମ ଗ୍ରହଣେ,
ସାଧୁ ସନ୍ନ୍ୟାସ ଅତିଥି ପଦନିବାଚନେ
ସନ୍ନ୍ୟାସ ଶୁଭ ଧର୍ମନୀତି ବର୍ଣ୍ଣନୋ-
ନାମ ଏକାଦଶୋଽଧ୍ୟାୟଃ ।

---

## ଦ୍ୱାଦଶ ଅଧ୍ୟାୟ

### ପ୍ରବୁଦ୍ଧାବତାର ଯୋଗ—

ଯେତେବେଳେ ଧର୍ମ ଗ୍ଳାନି ହୁଏ ଜଗତରେ ।
ପ୍ରାଣିଗଣ ଭ୍ରମନ୍ତି ଯେ ଲୋକ ପ୍ରବାଦରେ ॥

ଅବ୍ୟକ୍ତ ଚିନ୍ମୟ ବ୍ରହ୍ମଙ୍କର ଉପାସନା ।
ବିଶୁଦ୍ଧ ଜ୍ଞାନଭକ୍ତିର ନ ହୁଏ ଭାବନା ॥
କାମ୍ୟ କର୍ମାଦିରେ ଭ୍ରମି ଇହ ଲୋକଗଣ ।
ନ କରନ୍ତି ଅମୃତତ୍ତ୍ୱ ପଦ ବିସ୍ମରଣ ॥
କେବଳ ଲୋଲୁପ ହୁଅନ୍ତି ସ୍ଥୂଳ ବିଷୟରେ ।
ଅତୀନ୍ଦ୍ରିୟ ଜ୍ଞାନଲୋପ ହୁଏ ସଂସାରରେ ॥
ସେହି ସେହି ସମୟରେ ଜଗତ ଈଶ୍ୱର ।
ସ୍ୱଧର୍ମ ସ୍ଥାପନ ଅର୍ଥେ ହୁଅନ୍ତି ଅବତାର ॥
ସଂସାରର ଦୁଷ୍କୃତକୁ କରନ୍ତି ବିନାଶ ।
ପ୍ରାଣୀମାନଙ୍କୁ ଦିଅନ୍ତି ସତ୍ୟ ଉପଦେଶ ॥
ସତ୍ୟବ୍ରହ୍ମ ଉପାସନା କରି ସାଧୁଜନ ।
ଅବିଦ୍ୟା ମାୟା ବନ୍ଧନୁ ହୁଅନ୍ତି ମୋଚନ ॥
ଏହିରୂପେ ସୃଷ୍ଟି ମଧ୍ୟେ ନାନାବିଧ ଭାବେ ।
ଈଶ୍ୱରାବତାରମାନ ରହିଛନ୍ତି ପ୍ରସ୍ତାବେ ॥
ଏକ ଅଦ୍ୱିତୀୟ ବ୍ରହ୍ମଙ୍କର ତେଜୋବଳେ ।
ଧର୍ମ ଅବତାରମାନ ହୁଅଇ ଶୟୁଳେ ॥
ପୂର୍ବ ଯୁଗେ ଯେତେ ବିଷ୍ଣୁ ହେଲେ ଅବତାର ।
ନାମରୂପ ବହିଥିଲେ ଧରଣୀ ମଧ୍ୟର । ୧୦ ।
ନାରାୟଣ ରାମଚନ୍ଦ୍ର କୃଷ୍ଣଚନ୍ଦ୍ର ଆଦି ।
ବ୍ରହ୍ମର୍ଷି ରାଜର୍ଷି ସନକାଦି ଜନକାଦି ॥
ସ୍ୱୟଂ ଅବ୍ୟକ୍ତ କାରଣୁ ହୋଇଣ ଉତ୍ପନ୍ନ ।
ଅବ୍ୟକ୍ତ ବ୍ରହ୍ମ ମହିମା କରିଣ ଗାୟନ ॥
ସଂସାରର ଦୁଷ୍କୃତକୁ କରିଣ ବିନାଶ ।
ସତ୍ୟଧର୍ମକୁ ବିସ୍ତାରି ରଖି ସତ୍ୟ ଯଶ ॥

ଅନ୍ତେ ଲୀନ ହୋଇଲେ ଅବ୍ୟକ୍ତ ବ୍ରହ୍ମରେ ।
ମାୟା ନାମ ରୂପ ନାଶ ହେଲା ସ୍ୱମାୟାରେ ॥
ଇହ କଳି ଯୁଗେ ବୁଦ୍ଧଦେବ ଯେ ଶଙ୍କର ।
ଅବତାର ହୋଇ ଧର୍ମ ସ୍ଥାପିଲେ ମହାର ॥
ଶୂନ୍ୟବାଦ ବ୍ରହ୍ମବାଦ କରି ସଂଗଠନ ।
ଭେଦ ମୂର୍ତ୍ତି ଭେଦ ମତ କଲେ ସଂସ୍ଥାପନ ॥
ଏହି ଭେଦ ସନ୍ଦେହରେ ଭ୍ରମି ଲୋକଗଣ ।
ନାନା ପ୍ରକାରରେ ମତ କରିଲେ ବ୍ୟାଖ୍ୟାନ ॥
ଶୈବ ଶାକ୍ତ ବୈଷ୍ଣବ ଯେ ଗାଣପତ୍ୟ ସୌର ।
ଏହିରୂପେ ନାନା ଦୀକ୍ଷା ହୋଇଲା ପ୍ରଚୁର ॥
ଦେବ ଦେବୀ ମୂର୍ତ୍ତିପୂଜା ହିଂସାଦି କ୍ରିୟାରେ ।
ଧର୍ମଧ୍ୱଜା ବ୍ୟାପିଗଲା ଭୋଗ ବିଳାସରେ ॥
ନାନା ତୀର୍ଥ ବ୍ରତ ଯଜ୍ଞ କରି ପ୍ରାଣୀମାନେ ।
ଅନ୍ଧୀଭୂତ ହେଲେ ରଜ ତମସ ଅଜ୍ଞାନେ । ୨୦ ।
ବୈଦିକ କର୍ମକାଣ୍ଡ ଯେ ଶାସ୍ତ୍ର ପୁରାଣରେ ।
ଘୋଷିତ ହୋଇଲା ସର୍ବ ଚୌଦିଗ ଦେଶାନ୍ତରେ ॥
ମିଶଇ କାମ୍ୟ କର୍ମରେ ମଜ୍ଜି ଲୋକଗଣ ।
ପରମାତ୍ମା ତତ୍ତ୍ୱ ପଦ ହେଲେ ବିସ୍ମରଣ ॥
ପ୍ରପଞ୍ଚବାଦରେ ସଦା ଲୌକିକ ବାଦରେ ।
ପ୍ରମତ୍ତ ହୋଇଲେ ପ୍ରାଣୀ ନାନା କୁକ୍ରିୟାରେ ॥
ବୈଦିକ ପ୍ରାଚୀନ ସତ୍ୟ ଧର୍ମ ସନାତନ ।
ଇହ କଳିଯୁଗ ମଧ୍ୟେ ହୋଇଲା ଗୋପନ ॥
ନାନା ବିଜାତୀୟ ଧର୍ମ ପୁଣ୍ୟ ଭାରତରେ ।
ପ୍ରବେଶ ହୋଇଲା ରଜତମସ ଗୁଣରେ ॥

ନାନା ଦୁର୍ଗତି ଲଭିଲେ ମାନବ ସକଳ ;
ଗମି ନ ପାରିଲେ କେହି ଅଭୟ ମଣ୍ଡଳ ॥
ସର୍ବ ବିଶ୍ୱ ଅଧିପତି ପରମ ଈଶ୍ୱର ।
ପରମ ଦୟାଳୁ ବିଭୁ ମହିମା ସାଗର ॥
ସର୍ବ ଅନ୍ତର୍ଯାମୀ ସେହୁ ସର୍ବଜୀବ ପତି ।
ସଂସାରର ଜ୍ଞାତ ହୋଇ ଧର୍ମ ଅବନତି ॥
ସ୍ୱମହିମା ଶକ୍ତିରେ ସେ ହେଲେ ଅବତାର ।
ଅଦ୍ଭୁତ ପ୍ରବୁଦ୍ଧ ରୂପ ମାନବ ଶରୀର ॥
ସର୍ବାବତାର ବରିଷ୍ଠ ଅଯୋନିସମ୍ଭୂତ ।
ପରମ ଗୁରୁରୂପରେ ହୋଇଲେ ବିଖ୍ୟାତ । ୩୦ ।
ପୁଣ୍ୟ ଭାରତଭୂମିରେ ହେଲେ ଅବତୀର୍ଣ୍ଣ ।
ମହିମା ଯାହାଙ୍କ କରି ନୁହଇ ବର୍ଣ୍ଣନ ॥
ହିମାଳୟ କଇଲାସ ଶିଖର ଗୁହାରେ ।
ବହୁଯୁଗ ଆତ୍ମଯୋଗ ସମାଧି ନିଷ୍ଠାରେ ॥
କେବଳ ବାୟୁ ଅପାନ କରି ସମାଧିରେ ।
ଯୋଗୀନ୍ଦ୍ର ସ୍ୱରୂପେ ବିଜେ କଲେ ସେହିଠାରେ ॥
ତଦନ୍ତେ ସେ ସ୍ଥାନ ତେଜି ବୁଦ୍ଧି ନାରାୟଣ ।
ନାନା ଦେଶ ବିଦେଶ ଯେ କଲେକ ଭ୍ରମଣ ॥
ଗୁପ୍ତଭାବେ ସନ୍ନ୍ୟାସୀ ସ୍ୱରୂପ ବେଶ ଧରି ।
ବ୍ରହ୍ମାଣ୍ଡ ଷୋର୍ଥେ ଭ୍ରମିଲେକ ବସୁନ୍ଧରା ॥
ଉତ୍କଳ ଖଣ୍ଡରେ ଆସି ହେଲେ ଉପଗତ ।
ମହିମା ଗୋସାଇଁ ଗୁରୁ ବାହ୍ମ ଅବଧୂତ ॥
ଖଣ୍ଡଗିରି ଜାଲଗିରି ପ୍ରଭୃତି ସ୍ଥାନରେ ।
ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ଜଳ ଆହାରରେ ॥

ସ୍ୱାତ୍ମଯୋଗସ୍ଥ ସମାଧି କଲେ ଜଗଦ୍‌ଗୁରୁ ।
ଭକ୍ତ ଜନଙ୍କର ମନୋବାଞ୍ଛା କଳ୍ପତରୁ ॥
ନାନା ଐଶ୍ୱର୍ଯ୍ୟକ ପ୍ରଭୁ ଇଚ୍ଛା ଅନିଚ୍ଛାରେ ।
ପ୍ରାଣୀମାନଙ୍କ ଯେ ଦୃଶ୍ୟ ହେଲା ସେ ସ୍ଥାନରେ ॥
ତତ୍ପରେ କପିଳାସକୁ କଲେକ ଗମନ ।
ଚତୁର୍ବିଂଶ ବର୍ଷ ବିତେଇଲେ ସେହି ସ୍ଥାନ ॥
ଗିରିଶିଖେ ଏକ ଚଟା ପଥର ଉର୍ଦ୍ଧ୍ୱରେ ।
ଉପବିଷ୍ଟ ହେଲେ ଦେବ ଅନନ୍ତ ଶଯ୍ୟାରେ ॥
ଏକବିଂଶ ଦିନ ଦୃଢ଼ପଦ୍ମ ଆସନରେ ।
ଏକ ଲକ୍ଷରେ ଯେ ସ୍ୱୟଂ ଅଲେଖ ପ୍ରଭୁଙ୍କର ॥
ନିଶ୍ଚଳ ହୋଇ ରହିଲେ କୃପାଳୁ ଶ୍ରୀଗୁରୁ ।
ଅନନ୍ତ ମହିମା ଯାର ଅଟେ ମହାମେରୁ ॥
ସର୍ବାଙ୍ଗ ଜ୍ୟୋତି ଦେହେ ହୁଏ ପ୍ରଭାନ୍ୱିତ ।
ଶ୍ରୀଅଙ୍ଗ ତାମ୍ରବର୍ଣ୍ଣରେ ଦିଶେ ଝଲକିତ ॥
ବସ୍ତ୍ର ପରିଚ୍ଛଦ ଅଙ୍ଗ ପ୍ରତ୍ୟଙ୍ଗେ ଶୋଭିତ ।
ବଲ୍କଳ ବାନା କୌପୀନ କଟୀରେ ଶୋଭିତ ॥
ଅନ୍ତରେ ଭାବନା କଲେ ଗୁରୁ ଅନ୍ତର୍ଯ୍ୟାମୀ ।
ପ୍ରାଣୀଗଣ କି ରୂପରେ ହେବେ ମୋକ୍ଷଗାମୀ ॥
ସତ୍ୟ ସନାତନ ଧର୍ମ ମହିମା ପ୍ରଚାର ।
କି ରୂପରେ ଧରଣୀରେ ହେଇବ ସୁସ୍ଥିର ॥
ଯେ ନିମିତ୍ତ ମହା ନିର୍ବାଣ ହୋଇଲା ସମ୍ଭୂତ ।
ସେହି ଦୀକ୍ଷା କି ରୂପେ ଯେ ହୋଇବ ବିଖ୍ୟାତ ॥
ସତ୍ୟ ମହିମା ଧର୍ମର ସତ୍ୟ ଉପଦେଶ ।
ପ୍ରଥମେ କିଏ ପାଇବ ଏ ଶୁଭ ଆଦେଶ ॥

ଏହିରୂପ ଭାବ ଏକବିଂଶ ଦିନ ପରେ ।
ଅନନ୍ତ ଶଯ୍ୟାକୁ ତ୍ୟାଗ କଲେଟି ସତ୍ୱରେ ।୫୦।
ଗିରିର ଏକ ଗୁହାରେ କଲେ ଅବସ୍ଥାନ ॥
ବନ୍ୟ ଫଳ ମୂଳ ଜଳ କଲେ ଭକ୍ଷ ପାନ ॥
ଅଦ୍ରି ଜଗନ୍ନାଥ ତ୍ୟାଗ କରି ନୀତ ଧାମ ।
ବ୍ରହ୍ମଚର୍ଯ୍ୟ ବେଶେ ଭ୍ରମି ନାନା ପୁରଗ୍ରାମ ॥
ସ୍ୱରୂପାବତାର ଗୁରୁଙ୍କର ଭାବ ଜାଣି ।
ମନ ମଧ୍ୟରେ ସର୍ବଦା ଗୁରୁନାମ ଗୁଣି ॥
କପିଳାସ ଗିରିକୁ ସେ କଲେ ଆଗମନ ।
ଜଗତ୍ ସ୍ୱାମୀଙ୍କ ପୁନର କରିଲେ ଦର୍ଶନ ॥
ସାଷ୍ଟାଙ୍ଗେ ପ୍ରଣାମ କରି ଗୁରୁପାଦତଳେ ।
ସବିନୟେ ପ୍ରଶ୍ନ କଲେ ବହୁ କୁତୂହଳେ ॥
ହେ ଗୁରୁ ମହିମାସ୍ୱାମି ମହତ ପୁରୁଷ ।
ସର୍ବ ଜୀବ ପରିତ୍ରାଣକାରୀ ତୁମ୍ଭେ ଈଶ ॥
ଜଗତ ରକ୍ଷା ଅର୍ଥରେ ଉଦେ ହୋଇଅଛ ।
ଗିରିଗୁହା ମଧ୍ୟେ ଆସି ଗୁପତେ ରହିଛ ॥
ତବ ପାଦରଜେ ପୃଥ୍ୱୀ ହୋଇଲା ପବିତ୍ର ।
ବିବେକୀ ପୁରୁଷଙ୍କର ତୁମ୍ଭେ ଜ୍ଞାନ ନେତ୍ର ॥
ତୁମ୍ଭେ ଜ୍ଞାନ ଭକ୍ତି ମୁକ୍ତି କୈବଲ୍ୟ ଦାୟକ ।
ମାୟା ଅବିଦ୍ୟା ବନ୍ଧନ ଭ୍ରାନ୍ତି ବିମୋଚକ ॥
ସର୍ବାବତାରବରେଣ୍ୟ ଅବଧୂତ ମୂର୍ତ୍ତି ।
ସର୍ବ ଦେବ ତବ ପାଦେ କରନ୍ତି ପ୍ରଣତି ।୬୦।
ହେ ଅନାଦି ସିଦ୍ଧଗୁରୁ ଅନନ୍ତ ପୁରୁଷ ।
ବର୍ଣ୍ଣି ନ ପାରଇଁ ତବ ମହିମା ଅଶେଷ ॥

ତବ ଅଭୟ ଚରଣ କରୁଣା ହେବାକୁ ।
ବତଳ କରି ଅସିଅଛ ମହାନନ୍ଦ୍ୟପୁରୁ ॥
ଦୋଷାକଳନ୍ତୁବାସନା ଯେ ନାହିଁ ନାଁ ଶ୍ରୀଅଙ୍ଗେ ।
ନଷ୍ଟସ୍ତ୍ର ଅଧର୍ମ ଦର୍ପ ନ ଶିବ ସମ୍ଭେଙ୍ଗ ॥
ଅବିଦ୍ୟା ଅସ୍ମିତା ରାଗ ଦ୍ୱେଷାଭିନିବେଶ ।
ତବ ଠାରେ ନାହିଁ ଏହୁ ପଞ୍ଚବିଧ କ୍ଲେଶ ॥
ଧର୍ମାଧର୍ମ ଜାତ ଆୟୁ ଭୋଗର ସଂସ୍କାର ।
ତବ ତେଜରେ ଏ ସର୍ବ ହୋଇଥାନ୍ତି ଦୂର ॥
ତୁମ୍ଭେ ପରମ ଈଶ୍ୱର ପୁରାଣ ପୁରୁଷ ।
ସର୍ବଙ୍କ କ୍ରୋ ହୃଦରେ ବହୁଛ ବିଶେଷ ॥
ସର୍ବ ଅଗ୍ରୁଜଙ୍କ ଗୁରୁ ସର୍ବ ଜଗଦ୍ ଗୁରୁ ।
ସତ୍ୟଧର୍ମ ପ୍ରଚାରାର୍ଥେ ଅସିଛ ଶୂନ୍ୟରୁ ॥
ଯୁଗେ ଯୁଗେ ଯେତେ ହୋଇଥିଲେ ଅବତାର ।
ସର୍ବ ଶ୍ରେଷ୍ଠ ଅଟ ତୁମ୍ଭେ ପ୍ରବୁଦ୍ଧାବତାର ॥
ଜଗତ ପ୍ରାଣୀମାନଙ୍କୁ କରିବ ଉଦ୍ଧାର ।
ମହିମା ଗୋସାଇଁ ଗୁରୁ ମହା ଯୋଗେଶ୍ୱର ॥
ତବ ପାଦପଦ୍ମେ ସଦା ପଶୁଛି ଶରଣ ।
ମାୟା ମୋହ ଦୁର୍ଦ୍ଦଶାରୁ କର ହେ କାରଣ ।୭୦।
ସତ୍ୟ ମହିମା ଧର୍ମର ସତ୍ୟ ଉପଦେଶ ।
ପ୍ରଦାନ କର ହେ ପ୍ରଭୋ ମୁହିଁ ତବ ଦାସ ॥
ଏହି ରୂପେ ଜଗନ୍ନାଥ କଲେ ବହୁ ସ୍ତୁତ ।
ସାଷ୍ଟାଙ୍ଗେ ଶରଣ ପଶି କରିଲେ ବିନତ ॥
ଶ୍ରୀଗୁରୁ ମହିମା ସ୍ୱାମୀ ଭାଷିଲେ ବଚନ ।
ବହୁଭାଗ୍ୟବଳେ ତୁମ୍ଭେ ଅସିଲ ଏ ସ୍ଥାନ ॥

ନିଷ୍କାମ ବ୍ରହ୍ମଭକ୍ତିରେ ହୁଅ ପରିପୂର୍ଣ୍ଣ ।
ବ୍ରହ୍ମଜ୍ଞାନ ତତ୍ତ୍ୱସାର କର ଯେ ଗ୍ରହଣ ॥
ଅହିଂସାଦି କର୍ମ ଯେତେ ନିଷ୍କାମଭାବରେ ।
ସଯତ୍ନେ ସାଧନ କର ସୁଦୃଢ଼ଚିତ୍ତରେ ॥
ଅହେତୁକ ଜ୍ଞାନ ହୃଦେ ହେଉ ଉତପନ୍ନ ।
ବିବେକ ବୈରାଗ୍ୟ ପଥେ କର ଯେ ଗମନ ॥
ବ୍ରହ୍ମ ଅବଧୂତାଶ୍ରମ ସନ୍ନ୍ୟାସ ନିଷ୍ଠାରେ ।
ଆଦ୍ୟ ସିଦ୍ଧ ପଦ ଯେନ କହିଲୁଁ ସୃଷ୍ଟିରେ ॥
ପୂର୍ବନାମ ଭୂଷଣକୁ ତେଜ ଯେ ତ୍ୱରିତେ ।
ଅଲେଖି ଅଦ୍ଭୁତ ବାନା ଧର ଶୀଘ୍ରତେ ॥
ଆଜଠାରୁ ତୁମ୍ଭ ନାମ ହୋଇଲା ଗୋବିନ୍ଦ ।
ଆଦ୍ୟ ସିଦ୍ଧ ବାବାପଦେ ହୁଅ ଯେ ଆନନ୍ଦ ॥
କୁମ୍ଭିବୃକ୍ଷର ବଲ୍କଲ ଭେକ ଯେ କୌପୀନ ।
ଶ୍ରୀହସ୍ତରେ ଗୋବିନ୍ଦଙ୍କୁ କଲେକ ପ୍ରଦାନ ॥
ସତ୍ୟ ମହିମା ଧର୍ମର ସର୍ବ ଉପଦେଶ ।
ସୁଚିତ୍ତରେ ଗୁରୁଦେବ କରିଲେ ପ୍ରକାଶ ॥
ପୂର୍ବ ଅଧ୍ୟାମାନଙ୍କରେ ହୋଇଛି ସୂଚିତ ।
ବିଶୁଦ୍ଧ ଜ୍ଞାନ ଭକତି କର୍ମ ଯେ ବିହିତ ॥
ସତ୍ୟ ତତ୍ତ୍ୱ ଉପଦେଶ ପାଇଣ ଗୋବିନ୍ଦ ।
କାୟମନୋବାକ୍ୟେ ହୋଇ ବହୁ ସୁଆନନ୍ଦ ॥
ପ୍ରବୁଦ୍ଧ ଗୁରୁ ସ୍ୱାମୀଙ୍କ ଆଦେଶାନୁସାରେ ।
ସିଦ୍ଧ ଅବଧୂତ ଭାବେ ଭ୍ରମିଲେ ସଂସାରେ ॥
ଯେଉଁରୂପେ ପ୍ରାଣୀମାନେ ହୋଇବେ ନିସ୍ତାର ।
ସେହି ସତ୍ୟ ମହିମାକୁ କରିଲେ ପ୍ରଚାର ॥

ମହିମା ସ୍ୱାମୀ ସେ କପିଳାସ କନ୍ଦରରେ ।
ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ଫଳ ଆହାରରେ ॥
ଯୂଗେ ପନ ଭାବେ ରହି ଗୁହା ଅଭ୍ୟନ୍ତର ।
ଏକୀଭୂତ ହୋଇ ସ୍ୱୟଂ ଚୈନ୍ୟ ଆତ୍ମାରେ ॥
ତଦନ୍ତେ ଦ୍ୱାଦଶ ବର୍ଷ କଲେ ଦୁଗ୍ଧ ପାନ ।
ଆତ୍ମା ସମାଧିରେ ବିତେ କଲେ ସେହିସ୍ଥାନ ॥
ତତ୍‌କାଳୀନ ଢେଙ୍କାନାଳ ରାଜ୍ୟର ନୃପତି ।
ଭଗୀରଥି ବାହାଦୁର ଯାଙ୍କ ନାମ ଖ୍ୟାତି ॥
ପ୍ରଭୁଙ୍କାବତାର ଗୁରୁ ମହିମାଙ୍କୁ ଜାଣି ।
ଗୋଦୁଗ୍ଧ ନିତ୍ୟେ ଯେ ଗାଉଥିଲେ ନୃପମଣି ॥
ଇତିମଧ୍ୟେ ଗୁରୁଦେବ ମହିମା ଗୋସାଇଁ ।
ଅଲୌକିକ ଭାବେ ଭୀମ ଭୋଇ ଦ୍ୱାରେ ଯାଇ ॥
ମହା ଐଶ୍ୱରିକ ତେଜ କରିଲେ ପ୍ରକାଶ ।
ସତ୍ୟ ମହିମା ଧର୍ମର ଦେଲେ ଉପଦେଶ ॥
ଅନ୍ଧ କନ୍ଧ ଭୀମ ଭୋଇ ପ୍ରଭୁ କରୁଣାରେ ।
ଜ୍ଞାନାଲୋକ ବିକଶିଲା ତାହାଙ୍କ ହୃଦରେ ॥
ପ୍ରଭୁଙ୍କୁ ଦର୍ଶନ କରି ଭୀମସେନ ଭୋଇ ।
ନିଶ୍ଚୟ ଜାଣିଲେ ଏହୁ ଜଗତ ଗୋସାଇଁ ॥
ସାଷ୍ଟାଙ୍ଗେ ଶରଣ ଗଲେ ଗୁରୁପାଦତଳେ ।
ମହିମାଧର୍ମେ ଦୀକ୍ଷିତ ହେଲେ ତତକାଳେ ।
ଭୀମଙ୍କୁ କବିତାଶକ୍ତି କରିଣ ପ୍ରଦାନ ।
ସେହିଠାରୁ ଜଗଦଗୁରୁ ହେଲେ ଅନ୍ତର୍ଦ୍ଧାନ ॥
କପିଳାସ କାନନରେ ହେଲେ ଉପଗତ ।
ଚତୁର୍ବିଂଶ ବର୍ଷ ଅନ୍ତେ ଗୁରୁ ଅବଧୂତ ॥

ପୃଥ୍ୱୀରକ୍ଷାର୍ଥେରେ ପୃଥ୍ୱୀ ଦେବୀଙ୍କ ଘରରେ ।
ନୂତନ ମୃତ୍ତିକାପାତ୍ରେ ଧର୍ମର ପଥରେ ॥
ପକ୍ୱାନ୍ନ ବ୍ୟଞ୍ଜନ ଭକ୍ଷା କଲେ ଗୁରୁସ୍ୱାମୀ ॥
ନିତ୍ୟକାଳ ରହସ୍ୟ ଜାଣନ୍ତି ସେ ଅନ୍ତର୍ଯାମୀ ।
ଯାହା ବଚନ ଶ୍ରବନ୍ତି ସର୍ବ ସୁମଙ୍ଗଳ ।
ନିତ୍ୟବାର ଅବୃତ୍ତି କରି ବଦନ୍ତି ସକଳ । ୧୦୦ ।
ମହାପ୍ରଭୁଙ୍କ ଆଦେଶ ବୋଲି ବଖାଣନ୍ତି ।
ଅହଂ ମମ ପଦ ବାକ୍ୟ ଦୂରେ ତେଜି ଥାନ୍ତି ॥
ସ୍ୱୟଂ ସ୍ୱରୂପ ତଟସ୍ଥ ଅଟେ ତାହାଙ୍କର ।
କେବେହେଁ ନ ଘଟିଥିଲା ଅବସ୍ଥା ଅନ୍ତର ॥
କପିଳାସସ୍ଥାନ ତ୍ୟାଗ କରି ଗୁରୁସ୍ୱାମୀ ।
ସନ୍ନ୍ୟାସ ଅତିଥିଭାବେ ହୋଇ ଦେଶଗାମୀ ॥
ଗ୍ରାମେ ଗ୍ରାମେ ରହି ଧର୍ମ କଲେ ସେ ପ୍ରଚାର ।
ଗ୍ରହଣ କରିଲେ ତାହା ସାଧୁ ସୁଜ୍ଞ ନର ॥
ସ୍ୱମହିମା ନାନାସ୍ଥାନେ ହେଲା ପ୍ରକଟିତ ।
ସତ୍ୟ ମହିମା ଧର୍ମ ଯେ ହୋଇଲା ବିଖ୍ୟାତ ॥
ଆଦ ସତ୍ୟଯୁଗେ ଯାହା ଥିଲା ସୁବିଖ୍ୟାତ ।
ସେହି ସତ୍ୟ ବ୍ରହ୍ମଦୀକ୍ଷା କରିଲେ ସ୍ଥାପିତ ॥
ବେଦ ପୁରାଣର କର୍ମକାଣ୍ଡ ଶବ୍ଦଜାଲ ।
ବ୍ରହ୍ମଜ୍ଞାନବଳେ ତାହା ନାଶିଲେ ସକଳ ॥
ବିଶୁଦ୍ଧ ବ୍ରହ୍ମଜ୍ଞାନ ଯେ ଭକ୍ତି ଉପଦେଶ ।
ସେହି ସତ୍ୟ ଦୀକ୍ଷା ସର୍ବ କରିଲେ ପ୍ରକାଶ ॥
ଭକ୍ତଜନର ସହସ୍ର ସହସ୍ର ନରନାରୀ ।
ସତ୍ୟରେ ଦୀକ୍ଷିତ ହେଲେ ଗୁରୁଙ୍କ ସୁମରି ॥

କେତେ ତ୍ୟାଗୀ ହୋଇ ହେଲେ ପରମ ସନ୍ନ୍ୟାସୀ ।
ବ୍ରହ୍ମ ଅବଧୂତାଶ୍ରମେ ପ୍ରଭୁ ନାମେ ଘୋଷି ॥
ନାନା ସ୍ଥାନେ ଧର୍ମାଶ୍ରମ ହୋଇଲା ନିର୍ମାଣ ।
ଅନେକ ବିଘ୍ନ ରଚିଲେ ସତ୍ୟଦ୍ୱେଷିଗଣ ॥
ପ୍ରଭୁ ମହିମାରେ ସର୍ବ ବିଘ୍ନ ହେଲା କ୍ଷୟ ।
ଅଲେଖ ବ୍ରହ୍ମନାମରେ ଶୁଭେ ଜୟ ଜୟ ॥
କେତେ ସ୍ଥାନେ ଧୁନିଗୃହ କରିଲେ ରଚନ ।
ଘୃତାହୁତଦ୍ୱାରା ହେଲା ଦୁଷ୍କୃତ ଖଣ୍ଡନ ॥
ବହୁ ବିଚିତ୍ର ଭାବରେ ହେଲା ବାଲ୍ୟଲୀଳା ।
ନିଷ୍ଠ ସପ୍ରେମରେ ପ୍ରଭୁ କରିଲେକ ଖେଳା ॥
ସିଦ୍ଧ ସାଧୁ ଭକ୍ତଗଣ ଚରଣେ ସେବନ୍ତି ।
ନିର୍ଲିପ୍ତଭାବରେ ଗୁରୁ ମହୀ ପର୍ଯ୍ୟଟନ୍ତି ॥
ମୃତ ବ୍ୟକ୍ତିକୁ ସେ ପୁନଃ କଲେ ପ୍ରାଣଦାନ ।
ଚକ୍ଷୁବିହୀନକୁ ଚକ୍ଷୁ କରିଲେ ପ୍ରଦାନ ॥
ଅଙ୍ଗାରେ ରୋଗୀମାନେ ଯେ ହେଲେ ରୋଗମୁକ୍ତ ।
କୌଣସି ବିଷୟରେ ପ୍ରଭୁ ନୁହନ୍ତି ଆସକ୍ତ ॥
ସ୍ୱମହିମା ତେଜରେ ଯେ ଅଲୌକିକ ପ୍ରଭା ।
ଅନିଚ୍ଛାରେ ପ୍ରକଟିତ ହେଲା ଜନଲୋଭା ॥
ମହିମା ଗୋସାଇଁ ଗୁରୁ ଅଲେଖ ଅଦ୍ଭୁତ ।
କେବେ ବା ଯୋଗନିଦ୍ରାରେ ହୁଅନ୍ତି ଅଭିଭୂତ ॥
ଏକ ସପ୍ତାହରେ ପୁନଃ ନୟ ସପ୍ତାହରେ ।
ଏକାସନରୁ ଉତ୍ଥିତ ହୁଅନ୍ତି ସତ୍ୱରେ । ୧୨୦ ।
କେବେ ବା ଆକାଶମାର୍ଗେ କରନ୍ତି ଗମନ ।
ଜଳ ଅଗ୍ନିମଧ୍ୟେ କେବେ ହୁଅନ୍ତି ନିମଗ୍ନ ॥

ସକାମୀଙ୍କ ସର୍ବକାମ କରନ୍ତି ସମ୍ପୂର୍ଣ୍ଣ ।
ନିଷ୍କାମୀ ଭକ୍ତଙ୍କୁ ଦୃଶ୍ୟ ଅବ୍ୟକ୍ତ ଅବର୍ଣ୍ଣ ॥
ଏହିରୂପ ନାନା ଐଶୀ ଶକ୍ତି ପ୍ରଭ୍ରମନ ।
ଜଙ୍ଗଲଭୂମିରେ କରିଥିଲେ ପ୍ରକଟନ ॥
ସିଦ୍ଧି ମହିମା ନୁହଇ ବ୍ରହ୍ମ ଯେ ମହିମା ।
ପ୍ରକାଶ ହୋଇ କଳିର ଭାଙ୍ଗିଲେ ଗରିମା ॥
ବିଶୁଦ୍ଧ ଅଦ୍ୱୈତବାଦ କହିଲେ ପ୍ରଚୁର ।
ସତ୍ୟମହିମା ଧର୍ମ ଯେ ବେଦାନ୍ତ ସୁସାର ॥
ଚତୁର୍ଦ୍ଦଶ ସମ୍ବତ୍ସର ଭ୍ରମି ନାନା ସ୍ଥାନ ।
ପ୍ରବୁଦ୍ଧାବତାର ଗୁରୁ ମହାମହିମାନ ॥
ପରଶେଷେ ଢେଙ୍କାନାଳ ଯୋରନ୍ଦା ଆଶ୍ରମେ ।
ଚିରସମାଧି ଲଭିଣ ଗମିଲେ ସ୍ୱଧାମେ ॥
ଏ ଅଧ୍ୟାୟର ସମ୍ପୂର୍ଣ୍ଣ ବିଷୟମାନ ବ୍ୟକ୍ତ ।
ସତ୍ୟ ମହିମା ଧର୍ମର ଇତିହାସେ ଉକ୍ତ ॥
ସଚ୍ଚିନ୍ମୟ ପରଂବ୍ରହ୍ମେ ଶରଣ ଆମ୍ଭର ।
ଶରଣ ରକ୍ଷା କରନ୍ତୁ ମହିମାସାଗର ॥
ଚିନ୍ମୟ ବ୍ରହ୍ମଗୀତା ଯେ ଚିନ୍ମୟ ଅକ୍ଷରେ ।
ସମ୍ପୂର୍ଣ୍ଣ ହୋଇଲା ଏହା ଚିନ୍ମୟ ଭାବରେ । ୧୩୦ ।

ଇତି ଶ୍ରୀମଚ୍ଚିନ୍ମୟବ୍ରହ୍ମଗୀତାୟାଂ ପ୍ରବୁଦ୍ଧାବତାର ଯୋଗକଥନେ
ସତ୍ୟମହିମାଧର୍ମ ସଂସ୍ଥାପନେ ଅଧର୍ମଦର୍ପଖଣ୍ଡନେ
ସଂକ୍ଷିପ୍ତ ଅଦ୍ଭୁତ ମହାମହିମା ବିବରଣୋ
ନାମ ଦ୍ୱାଦଶୋଽଧ୍ୟାୟଃ । ୧୨ ।

ସମାପ୍ତେୟଂ ଗୀତା ।

ଶ୍ରୀସଚ୍ଚିନ୍ମୟ ବ୍ରହ୍ମାର୍ପଣମସ୍ତୁ ।

Printed by P. Kar at the U. S. Press, Cuttack.
13-11-39—1000

ବିଶ୍ୱନାଥ ବାବାଙ୍କ ରଚିତ

## ସତ୍ୟମହିମାଧର୍ମ ବିଷୟକ—ଗ୍ରନ୍ଥମାନ

| | | |
|---|---|---|
| ମହିମାଧର୍ମ ପ୍ରତିପାଦକ | ... | ଟ ୧୯ |
| ସତ୍ୟମହିମାଧର୍ମ ଇତିହାସ | | ଟ ୧୯ |
| ଭାଗବତସାର ସତ୍ୟଧର୍ମ | | ଟ ୧। |
| ଶ୍ରୀମଚ୍ଛିନ୍ନୟୁ ବ୍ରହ୍ମଗୀତା | | ଟ ୦· |
| ସାଧୁଗୀତ | ... | ଟ ୦ |
| ଭାତ ମାଠ ଗୀତ | | ଟ ୦, |

ପ୍ରାପ୍ତିସ୍ଥାନ—ମହିମା ଗାଦି, ପୋଃ ଅଃ ଢେଙ୍କାନାଳ

ଓ

ଭାରତର ଅନ୍ୟାନ୍ୟ ପୁସ୍ତକାଳୟମାନଙ୍କରେ ମିଳେ ।